# ଦିନଚର୍ଯ୍ୟା

ଜଗନ୍ନାଥ ପ୍ରସାଦ ଦାସ



**ଦିନଚର୍ଯ୍ୟା**, ଲେଖକ : **ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ** ପ୍ରକାଶକ : **ସହଦେବ ପ୍ରଧାନ**, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୮୩, ମୁଦ୍ରଣ : **ଶ୍ରୀଲକ୍ଷ୍ମୀ ପ୍ରିଣ୍ଟର୍ସ**, ଏରୋଡ୍ରୋମ ଏରିଆ, ଭୁବନେଶ୍ୱର-୭୫୧୦୦୯ ।

**DINACHARYA** *Author* : **Jagannath Prasad Das**, *Publisher* : **Sahadev Pradhan**, Friends' Publishers, Binod-Bihari, Cuttack-753002, Orissa, ( India ), *First Edition* : 1983, *Printer* : **Sri Laxmi Printers**, Aerodrome Area, Bhubaneswar-751009.

**Price-Rs. 16-00**

# ସୂଚୀ

# ଘର

କିଛି ସମୟ ଖୋଜିବାପରେ ସଦାନନ୍ଦ ଏବେ ଏକ ଜାଗା ଠିକ୍ କଲା ଯେଉଁଠାରେ ଗ୍ରାଇରେ ଛିଡ଼ା ହୋଇ ଠିକାଦାର ସହିତ କଥାବାର୍ତ୍ତା କରିବା ସଙ୍ଗେ ସଙ୍ଗେ ସିମେଣ୍ଟରେ ବାଲି ମିଶାଉଥିବା ମଜୁରିଆଙ୍କ ଉପରେ ମଧ୍ୟ ଦୃଷ୍ଟି ରଖିପାରିବ ।

ଘର ତିଆରି କରିବାରେ ଏ ତାର ପ୍ରଥମ ଅଭିଜ୍ଞତା ଏବଂ ସେ ଏ ବିଷୟରେ ଚିହ୍ନା ଅଚିହ୍ନା ଅନେକ ଲୋକଙ୍କଠାରୁ ପରାମର୍ଶ ନେଇଥିଲା । ଅନେକ ଅନୁସନ୍ଧାନ ପରେ ସେ ଏଇ ସତ୍ୟରେ ଉପନୀତ ହୋଇଥିଲା ଯେ ମଜଭୁତ ଘର ତିଆରି କରିବା ପାଇଁ ବାଲି ଓ ସିମେଣ୍ଟର ଅନୁପାତ ହିଁ ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏଥିପାଇଁ ସେ ପ୍ରତିଦିନ ସକାଳୁ ଯାଇ ବାଲି ସିମେଣ୍ଟ ମିଶାଇବାର ପର୍ବକୁ ତଦାରଖ କରୁଥିଲା । ସେ ଦିନ କିନ୍ତୁ ସେ ପହଞ୍ଚିବା ବେଳକୁ ବାଲି ସିମେଣ୍ଟ ମିଶା ସରିଥିଲା ଏବଂ ଏ କଥା ତାକୁ ଅତ୍ୟନ୍ତ ସନ୍ଦେହଜନକ ମନେହେଲା । ସେ ହାତରେ କିଛି ବାଲି ମିଶା ସିମେଣ୍ଟ ନେଇ ଏପାଖ ସେ ପାଖ କଲା ଏବଂ ନିଜ ସ୍ୱରକୁ ଏକ ଅଭିଜ୍ଞତାପୂର୍ଣ୍ଣ ଗାମ୍ଭୀର୍ଯ୍ୟ ଦେଇ ଠିକାଦାରକୁ କହିଲା, "ଭାଗମାପ ତ ଠିକ୍ ଜଣା ପଡୁନାହିଁ !"

ଠିକାଦାର ସଦାନନ୍ଦର ଘର ତିଆରି ସମ୍ପର୍କିତ ଜ୍ଞାନର ସ୍ୱଳ୍ପତା ବିଷୟରେ ସମ୍ପୂର୍ଣ୍ଣ ଅବଗତ ଥିଲା, କିନ୍ତୁ ସେ ତାକୁ ଏ କଥା ଜଣାଇବାକୁ ଚାହୁଁ ନ ଥିଲା । ସେ ମଧ୍ୟ କିଛି ବାଲି ହାତରେ ଉଠାଇ ତାକୁ ପରଖ କରିବାର ଛଳନା କଲା ଏବଂ କହିଲା, "ଆପଣ ଠିକ୍ ଧରିଛନ୍ତି । ମୁଁ ଟିକିଏ ସେ ପାଖକୁ ଚାଲି ଯାଇଥିଲି, ଭାଗମାପ ଭୁଲ !" ଏଥରକ ସେ ମଜୁରିଆଙ୍କୁ ପାଟି କରି ଗାଳିଦେଲା ଏବଂ କହିଲା, "ଆଉଟିକେ ସିମେଣ୍ଟ ମିଶାଅ ।" ମଜୁରିଆମାନେ ମଧ୍ୟ ଏ ନାଟକ ସହିତ ଅଭ୍ୟସ୍ତ ଥିଲେ ଏବଂ ଏଥରକ ବାଲିରେ ଆଉ କିଛି ସିମେଣ୍ଟ ମିଶାଇଲେ । ତାଙ୍କ ଭିତରୁ ଜଣେ ଆସି ପୁଣି କିଛି ବାଲି ସଦାନନ୍ଦ ହାତରେ ଦେଲା ଏବଂ ସଦାନନ୍ଦ ତାକୁ ଗମ୍ଭୀର ଭାବରେ ଦେଖି କହିଲା, "ଠିକ୍ ଅଛି ।"

ଆଜି ଛୁଟି ଦିନ ଥିବାରୁ ସଦାନନ୍ଦ ସକାଳୁ ଘରୁ ଖାଇ ପିଇ ବାହାରି ଦିନ ସାରା ସେଠାରେ ବସି କାମ ଦେଖିବ ବୋଲି ଠିକ୍ କରିଥିଲା । କାମ ପାଖରେ ବସିବା

ପାଇଁ କୌଣସି ସୁବିଧା ଜାଗା ନ ଥିଲା । ଘରୁ ଗୋଟାଏ ଚଉକି ଆଣି ସେଠାରେ ପକାଇବ ବୋଲି ଅନେକ ଦିନରୁ ଠିକ୍ କରିଥିଲେହେଁ ସେ ସବୁବେଳେ ଚଉକି ଆଣି-ବାକୁ ଭୁଲି ଯାଉଥିଲା । ଚେଣ୍ଟ କାମ ଜାଗାରେ ସେ ଦୁଇଥାକ ଇଟା ଉପରେ କାଠ ପଟା ପକାଇ ତାର ବସିବାର ସ୍ଥାନ ନିର୍ଦ୍ଧାରିତ କରିଥିଲା । ସୂର୍ଯ୍ୟର ଗତି ସହିତ ଗଛ ଘୁଞ୍ଚିବା ଏବଂ ବାଲି ସିମେଣ୍ଟ କାମର ସ୍ଥାନ ପରିବର୍ତ୍ତନ ସହିତ ଏଇ କାମଚଲା ଚଉକିକୁ ଏ ପାଖ ସେ ପାଖ କରି ହେଉ ନ ଥିବାରୁ ସେ କ୍ଷୁବ୍ଧ ହେଉଥିଲା । ଆଜି ଏଇ କାଠପଟା ଉପରେ ବସି ଖରା ସହିତ ନିଜର ଛତାର କୋଣକୁ ଠିକ୍ କରୁ କରୁ ସେ କାଲି ନିଶ୍ଚୟ ଘରୁ ଚଉକି ଆଣି ସେଠାରେ ପକାଇବ ବୋଲି ଏକ ଦୃଢ଼ ନିଷ୍ପତ୍ତି ନେଲା ।

ଏଇ ଉପଲକ୍ଷରେ ତାର ସୁଭଦ୍ରା କଥା ମନେ ପଡ଼ିଲା ଯେ କି ପ୍ରକୃତ ଅର୍ଥରେ ତାର ଘରର ଗୃହିଣୀ ଥିଲା । ସୁଭଦ୍ରା ଘରର ସବୁ ଜିନିଷ ଠିକ୍ ସ୍ଥାନରେ ରହିବାରେ ବିଶ୍ୱାସ କରୁଥିଲା ଏବଂ ସଦାନନ୍ଦ ଯେ ଏତେ ଦିନ ଯାଏ ଘରୁ ଚଉକି ଆଣି ପାରି-ନ ଥିଲା, ସେଥିପାଇଁ ପ୍ରକୃତ ପକ୍ଷରେ ସୁଭଦ୍ରା ହିଁ ଦାୟୀ ଥିଲା । ମଝି ଘରେ ପଡ଼ିଥିବା ଚଉକିକୁ ସେଠାରୁ ବାହାର କରିବା ପାଇଁ ସୁଭଦ୍ରାର ଅନୁମତିର ପ୍ରୟୋଜନ ଥିଲା ଏବଂ ସଦାନନ୍ଦ ସାହସ କରି ତାକୁ ଏ ବିଷୟରେ କହି ପାରୁ ନ ଥିଲା । ସୁଭଦ୍ରା ପାଇଁ ଘର ଥିଲା ସେମାନଙ୍କର ସରକାରୀ କ୍ୱାର୍ଟରର ତିନି କାନ୍ଥ ଭିତରେ ଥିବା ଖଟ ଟେବୁଲ ଚଉକି ଥାଳି ବାସନ ଟ୍ରଙ୍କ ବାଲଟି ଇତ୍ୟାଦିର ପଦାର୍ଥିକ ସମଷ୍ଟି । ସୁଭଦ୍ରାର ସମସ୍ତ ସମୟ ଏଇ ଆସବାବ ଓ ଦରକାରୀ ଅଦରକାରୀ ଅନ୍ୟାନ୍ୟ ଜିନିଷପତ୍ର ସବୁର ଯତ୍ନ ନେବାରେ କଟି ଯାଉଥିଲା । ସେ ସବୁ ଜିନିଷକୁ ବାରମ୍ବାର ଯଥା ସ୍ଥାନରେ ରଖୁଥିଲା ଏବଂ ସେମାନଙ୍କୁ ଝାଡ଼ପୋଛ କରି ପରିଷ୍କୃତ ଓ ଚକମକ ରଖିବାରେ ବିଶ୍ୱାସ କରୁଥିଲା । ଏଥିପାଇଁ ସୁଭଦ୍ରା ସାରା ଦିନ ଘରକୁ ସଫା ରଖିବାରେ କିମ୍ବା ନିଜର ହାତକୁ ଧୋଇବାରେ ବ୍ୟସ୍ତ ରହୁଥିଲା ।

ନିଜ ପାଇଁ ଗୋଟିଏ ଘର ତିଆରି କରିବାର ଯୋଜନା ପଛରେ ମୂଳ ପ୍ରେରଣା ସୁଭଦ୍ରାର ହିଁ ଥିଲା । ସରକାରୀ ଚାକିରିରେ ସଦାନନ୍ଦକୁ କେବେ କେମିତି ବଦଳି ~~ହେବାକୁ ପଡ଼ୁଥିଲା~~ ଏବଂ ସେଥିପାଇଁ ସୁଭଦ୍ରାକୁ ଘର ବଦଳାଇବାକୁ ପଡୁଥିଲା । ସୁଭଦ୍ରା ପାଇଁ ଏ ଏକ ଅନାବଶ୍ୟକ ଯନ୍ତ୍ରଣା ଥିଲା । ଯଦିଓ ସେ ନୂଆ ଘରେ ରହିବାର ଅଳ୍ପ କିଛି ଦିନ ଭିତରେ ହିଁ ପ୍ରତ୍ୟେକଟି ଜିନିଷ ପାଇଁ ଗୋଟିଏ ଉପଯୁକ୍ତ ସ୍ଥାନ ନିର୍ଦ୍ଧାରିତ କରି ଦେଉଥିଲା, ସେ ଏକ ନିଜସ୍ୱ ଘର ଚାହୁଁଥିଲା ଯେଉଁଠାରେ ପ୍ରତ୍ୟେକଟି ଜିନିଷର ଏକ ସ୍ଥାୟୀ ଠିକଣା ରହିବ । ଏଥିପାଇଁ ସେ ବାରମ୍ବାର ସଦାନନ୍ଦକୁ ଜାଗା କିଣି ଘର କରିବା ପାଇଁ ପ୍ରୋତ୍ସାହିତ କରୁଥିଲା ।

ସଦାନନ୍ଦ ବିଶେଷ ଉଚ୍ଚାକାଙ୍କ୍ଷୀ ନ ଥିଲା ଏବଂ ଚାକିରି ଜୀବନ ଶେଷରେ ପୁଣି ଗାଁକୁ ଚାଲିଯାଇ ସେଠାରେ ନିଜର ସାମାନ୍ୟ ଜମିବାଡ଼ିକୁ ନେଇ ବସବାସ କରି ରହିବ ବୋଲି ଠିକ୍ କରିଥିଲା । କିନ୍ତୁ ତାର ଏଇ ନିଷ୍ପତ୍ତି ବହୁତ ଦିନ ତିଷ୍ଠିଲା ନାହିଁ । ଏହା ପରେ ସେ ବିବାହ କରିଥିଲା, ତାର ଗୋଟିଏ ପୁଅ ହୋଇଥିଲା, ଯାହାକୁ ସ୍କୁଲ କଲେଜରେ ପଢ଼ାଇବାକୁ ହୋଇଥିଲା, ଏବଂ ଇତି ମଧ୍ୟରେ ଜମିଜମା ଆଇନ ଇତ୍ୟାଦିରେ ବିଭିନ୍ନ ପ୍ରକାରର ପରିବର୍ତ୍ତନମାନ ହୋଇ ଗାଁରେ ଥିବା ଜମିରେ ତାର ସ୍ୱତ୍ୱ ବିଷୟରେ ସନ୍ଦେହ ସୃଷ୍ଟି ହୋଇଥିଲା । ଏଥିପାଇଁ ସେ ସହଜରେ ସୁଭଦ୍ରା ସହିତ ଏକମତ ହୋଇ[illegible] ଘର ପାଇଁ ଜମି ଖୋଜିବାରେ ମନ ଦେଇଥିଲା ।

ଅଫିସରେ ତାର ଅନେକ ସହକର୍ମୀ ତାକୁ ସେମାନଙ୍କର ଝିଅମାନଙ୍କ ପାଇଁ ପାତ୍ର ଖୋଜିବାର ଦୁଶ୍ଚିନ୍ତା ବିଷୟରେ ଅନେକ ସମୟରେ ଆସି କହୁଥିଲେ । ସଦାନନ୍ଦ ଦେଖିଲା ଯେ ଜମିଟିଏ ଠିକ୍ କରିବା ମଧ୍ୟ ଅନୁରୂପ କଷ୍ଟସାଧ୍ୟ । ବରପାତ୍ର ପାଇଁ ଯେଉଁଭଳି ଚରମାନେ ଆସି ଖବର କରୁଥିଲେ ସେଇଭଳି ତାର ଜଣାଶୁଣା ଲୋକମାନେ ଆସି କେଉଁଠି କେଉଁଠି ବିକ୍ରି ପାଇଁ ଜମି ଅଛି, ସେ ବିଷୟରେ ତାକୁ ଲୁପ୍ତ ବିବରଣୀ ଦେଉଥିଲେ । ଅଧିକାଂଶ ସମୟରେ ସେ ଜମି ମାଲିକ ପାଖରେ ପହଞ୍ଚିଲାବେଳକୁ ପାତ୍ର ହୁଏତ ଅନ୍ୟ କେଉଁଠି ବିବାହ କରି ସାରିଥିଲା, ଅର୍ଥାତ୍ ଜମି ଅନ୍ୟତ୍ର ବିକ୍ରି ହୋଇସାରିଥିଲା ଅଥବା ଯୌତୁକର ଅଙ୍କ ସଦାନନ୍ଦର ସାମର୍ଥ୍ୟର ବହିର୍ଭୂତ ଥିଲା । ସଦାନନ୍ଦ କିନ୍ତୁ ଅଧ୍ୟବସାୟୀ ଥିଲା ଏବଂ ଅଳ୍ପ ଦିନ ଭିତରେ ସେ ଅନେକ ସରକାରୀ ବେସରକାରୀ ଦେବୋତ୍ତର ଓ୍ୱାକଫ୍ ଜବରଦଖଲ ଓ ବେଓ୍ୱାରିସୀ ଜମିର ତଫସିଲ ସଂଗ୍ରହ କରିବାରେ ସଫଳ ହେଲା । ପ୍ରତିଦିନ ଅଫିସ ପରେ ସେ ଯାଇ ଜମି କିଣିବା ଉଦ୍ୟମରେ ଲାଗୁଥିଲା ଏବଂ ଶେଷରେ ତାର ପ୍ରଚେଷ୍ଟା ଫଳପ୍ରଦ ହେଲା । ସେଦିନ ସନ୍ଧ୍ୟାବେଳେ ବୃଦ୍ଧ ମୁସଲମାନ ଭଦ୍ରବ୍ୟକ୍ତିଙ୍କୁ ତାଙ୍କର ଜମିପାଇଁ ଅଗ୍ରୀମ ଦେଇ ଆସିବା ପରେ ସେ ସୁଭଦ୍ରାକୁ ଆସି ଏ ଖବର ଦେଲା ଏବଂ ତୃପ୍ତିର ନିଃଶ୍ୱାସ ମାରିଲା ।

ଜମି ପାଇଁ ଟଙ୍କା ସଂଗ୍ରହ କରିବା ଥିଲା ପରବର୍ତ୍ତୀ ପର୍ବ ଯାହା ସମାନ ଭାବରେ ଦୁଃସାଧ୍ୟ ଥିଲା । ତାର ସଞ୍ଚିତ ଟଙ୍କା ଋଣର ଦରଖାସ୍ତକୁ ସେ ବିଭିନ୍ନ ସ୍ତରରେ ଅନୁଧାବନ କରି ଶେଷରେ ହାକିମଙ୍କ ଦସ୍ତଖତ କରାଇବାରେ ସମର୍ଥ ହେଲା ଏବଂ ଜମି ମାଲିକଙ୍କୁ ତାଙ୍କର ବାକି ଟଙ୍କା ଦେଇ ଜମିର ରେଜିଷ୍ଟ୍ରି କାମର ପର୍ବ ମଧ୍ୟ ତୁଲାଇଲା । କିନ୍ତୁ ଏତିକିରେ ସଦାନନ୍ଦର ଚିନ୍ତା ଓ ଶ୍ରମର ପରିସମାପ୍ତି ନଥିଲା । ଘର ତିଆରି କରିବାର ଆନୁଷଙ୍ଗିକ କାଇଦା କାନୁନ ସବୁ ବୈଦିକ ଯୁଗର ଯଜ୍ଞାନୁଷ୍ଠାନର ନୀତି ନିୟମଠାରୁ କୌଣସି ଅଂଶରେ କମ୍ ନଥିଲା । ନିଜର ଇଂଜିନିୟର ବନ୍ଧୁଙ୍କ

ପାଖକୁ ବାରମ୍ବାର ଯାଇ ଏବଂ ତାଙ୍କୁ ବିଭିନ୍ନ ଭାବରେ ତୋଷାମୋଦ କରି ସେ ପ୍ରଥମେ ଘରର ନକ୍ସା କରାଇଲା । ଏହା ଏକ ସମୟସାପେକ୍ଷ ବିଷୟ ଥିଲା କାରଣ ଘରର ନକ୍ସାରେ ସେ ସୁଭଦ୍ରାର ଅନୁମୋଦନ ଚାହୁଁଥିଲା । ସୁଭଦ୍ରା ଓ ଇଂଜିନିୟରଙ୍କ ସିଧା-ସଳଖ ଭେଟ ନଥିଲେ ଏବଂ ସୁଭଦ୍ରାର ମନ୍ତବ୍ୟ ଓ ଇଂଜିନିୟରଙ୍କ ସ୍ପଷ୍ଟୀକରଣ ଓ ସଂଶୋଧନକୁ ନେଇ ସଦାନନ୍ଦକୁ ବାରମ୍ବାର ଏପାଖ ସେପାଖ ହେବାକୁ ପଡ଼ୁଥିଲା । ପୂଜା-ଘରର ଆକାର ପ୍ରକାର, ଗାଧୁଆ ଘର ଝରକାର ଉଚ୍ଚତା, ଶୋଇବାଘର ଓ ବସିବା ଘରର ଦୂରତ୍ୱ ଇତ୍ୟାଦି ବିଷୟରେ ସୁଭଦ୍ରାର ନିର୍ଦ୍ଦିଷ୍ଟ ମତ ଥିଲା ଏବଂ ତାକୁ ନକ୍ସାରେ ପ୍ରତିଫଳିତ କରିବା ଥିଲା ଇଂଜିନିୟରଙ୍କ ବିଦ୍ୟା ବୁଦ୍ଧିର ଏକ ଜଟିଳ ପରୀକ୍ଷା । ~~ଥିଲା ।~~

ଯେଉଁଦିନ ଇଂଜିନିୟରଙ୍କ ଅଫିସରୁ ନକ୍ସାର ଦଣ କପି ଧରି ସଦାନନ୍ଦ ଘରକୁ ଫେରିଲା, ତା ମୁହଁରେ ଏକ ଅଲୌକିକ ବିଜୟୀର ଉଲ୍ଲାସ ଥିଲା । ନକ୍ସାକୁ ଧରି ସୁଭଦ୍ରା ଓ ସେ କିଛି ସମୟ ତଦାରଖ କଲେ । ନକ୍ସାଟି ଆଦୌ ସୁଭଦ୍ରାର ମନଃପୂତ ନ ଥିଲା । ଘରର ଏଲିଭେସନର ଚିତ୍ରକୁ ଇଂଜିନିୟର ଗଛ ଲତା ବିଦେଶୀ ଗାଡ଼ି ଇତ୍ୟାଦିରେ ସଜାଇ ଅତି ଆକର୍ଷଣୀୟ କରିଥିଲେ ଯାହା ସଦାନନ୍ଦକୁ ଅତି ସୁନ୍ଦର ମନେ ହେଲା, କିନ୍ତୁ ଏଇ ଘରର ଚିତ୍ର ସାମନାରେ କେବଳ ଜଣେ ସ୍ତ୍ରୀ ଓ ପୁରୁଷର ଚିତ୍ର ଥିଲା ଏବଂ ସେଥିରେ ରମୁର ଚିତ୍ର ନ ଥିବାରୁ ସୁଭଦ୍ରା ବିଶେଷ କ୍ଷୁବ୍ଧ ହେଲା । ସଦାନନ୍ଦ ତାକୁ ରମୁ ବିଷୟରେ କହିବାକୁ ଯାଉଥିଲା, କିନ୍ତୁ ଚୁପ୍ ରହିଲା, କାରଣ ସୁଭଦ୍ରା ସେତେବେଳକୁ ନକ୍ସାର କୋଠରୀମାନଙ୍କରେ କେଉଁଠାରେ କି ଜିନିଷକୁ କିପରି ଭାବରେ ରଖିବ ଏବଂ କାନ୍ଥର କେଉଁ ଜାଗାରେ କି ଆକାରର କଣ୍ଟାମାନ ଲଗାଇବ ସେ ବିଷୟରେ ଚିନ୍ତିତ ଥିଲା । ସୁଭଦ୍ରା ଯେତେବେଳେ ପାଣିକଳର ଟ୍ୟାପ୍ ସବୁକୁ ପୁଣି ଥରେ ଗଣିବାକୁ ଆରମ୍ଭ କଲା ସଦାନନ୍ଦ ସେଠାରୁ ଉଠି ଚାଲିଗଲା ।

ସଦାନନ୍ଦର ବିଜୟୋଲ୍ଲାସ କ୍ଷଣସ୍ଥାୟୀ ଥିଲା, କାରଣ ଅତି ଶୀଘ୍ର ତାକୁ ଅନ୍ୟ ଦୌଡ଼ରେ ଭାଗ ନେବାକୁ ପଡ଼ିଲା, ଯାହା ଏକ ପ୍ରତିବନ୍ଧକ ପ୍ରତିଯୋଗିତା ଥିଲା । ଏଥିରକ ପ୍ରତିବନ୍ଧକ ଥିଲେ ଟାଉନ୍ ପ୍ଲାନିଂ, ମ୍ୟୁନିସିପାଲିଟି, ବିଜୁଳି ଓ ପାଣି ଯୋଗାଣ ବିଭାଗ ଆଦି । ଏମାନଙ୍କୁ ଲଙ୍ଘନ କରିବା ସମୟ, ଶ୍ରମ ଓ ବ୍ୟୟସାପେକ୍ଷ ଥିଲା କିନ୍ତୁ ସଦାନନ୍ଦ ଅଧ୍ୟବସାୟର ସହିତ ଏମାନଙ୍କୁ ମଧ୍ୟ ଅତିକ୍ରମ କଲା ଏବଂ ଯଥାସମୟରେ ନକ୍ସାମାନ ବିଭିନ୍ନ ଅଫିସ୍‌ର ମଞ୍ଜୁରି ମୋହରମାନ ପିଠିରେ ନେଇ ତା ପାଖରେ ଫେରି ପହଞ୍ଚିଲେ । ସେ ବର୍ତ୍ତମାନ ଖେଳପଡ଼ିଆର ଏପରି ଅଂଶରେ ପହଞ୍ଚିଲା, ଯେଉଁଠୁ-ଘରତିଆରି ସାମଗ୍ରୀ ଯୋଗାଡ଼ କରିବାର ମାରାଥନ୍ ରେସ୍ ଆରମ୍ଭ ହେଉଥିଲା । ଇଟା,

କାଠ, ସିମେଣ୍ଟ ଓ ଲୁହାଛଡ଼ ପାଖରେ ପହଞ୍ଚିଲା ବେଳକୁ ସେ ସବୁ ଆନ୍ତୁରି ଦୂରକୁ ଘୁଞ୍ଚିଯାଉଥିଲେ । କିନ୍ତୁ ସଦାନନ୍ଦ ସେମାନଙ୍କୁ ମଧ୍ୟ ଆୟତ୍ତ କଲି ଏବଂ ଶେଷରେ ଶୁଭ ଦିନ ଦେଖି ପୂଜା କରାଯାଇ ମୂଳଦୁଆର ପ୍ରଥମ ଖୋଳିବା କାମ ଆରମ୍ଭ ହେଲା ।

ଆଜି ଛୁଟି ଦିନର ଖରାବେଳେ ଇଟା ଥାକ ଓ ଭଙ୍ଗା ପଥର ଚଡ଼କ ଉପରେ ବସି କାନ୍ଥର ଅଧ ମନ୍ଥର ବିସ୍ତାରକୁ ଦେଖିବାବେଳେ ସଦାନନ୍ଦର ମୁଣ୍ଡ ଭିତରେ ଘରତିଆରି କାର୍ଯ୍ୟକ୍ରମର ଦୁଃଖଦ ଅଧ୍ୟାୟଟି ଝଲସିଉଠିଲା । ତାର ସହକର୍ମୀମାନେ ତାକୁ ଏଇ ସମୟରେ ସୁଖନିଦ୍ରାରେ ଶୋଇଥିବାର ଦେଖାଗଲେ ଏବଂ ଏଭଳି ଏକ ଯୋଜନାରେ ହାତ ଦେଇଥିବାରୁ ସେ ନିଜକୁ ପୁନର୍ବାର ଭର୍ତ୍ସନା କଲା । ତାର ଘର ତିଆରି ସମ୍ପର୍କୀୟ ଏଭଳି ଅନେକ ଅପ୍ରୀତିକର ଅନୁଭବ ମନେପଡ଼ିଲା, ଯାହା ସେ ଭୁଲି ଯିବାକୁ ଶ୍ରେୟସ୍କର ମନେ କରୁଥିଲା । ଯଥା, ଅଫିସରୁ ସମସ୍ତ ଅସମୟରେ ଚାଲି ଯାଉଥିବାରୁ ହାକିମଙ୍କ ପାଖରୁ ଗାଳି, ଉପରେ ଆଠ ଲୁହାଛଡ଼ ବୋଝାଇ ଟ୍ରକର ତାଲି ଉପରେ ବସି ଯାଉଥିବାବେଳେ ତାକୁ ଜଣେ ସହକର୍ମୀ ଦେଖିଥିବା ଜନିତ ଅସ୍ୱସ୍ତି, ସିମେଣ୍ଟ ପରମିଟ ପାଇଁ ସପ୍ଲାଇ ଅଫିସରଙ୍କ କୋଠରୀ ଭିତରେ ପଶିଯିବା-ବେଳେ କେଉଁଠାରୁ ଦଉଡ଼ି ଆସି ଚପରାସି ତାକୁ ପ୍ରାୟ ଧକ୍କା ଦେଇ ବାହାର କରିଦେବାର ଅପମାନ, ଇତ୍ୟାଦି । ଏ ସବୁ ବିଶେଷ ବିଶେଷ ଘଟଣାମାନଙ୍କ ବ୍ୟତୀତ ତାକୁ ବର୍ତ୍ତମାନ ଅନେକ ଭୁଲି ଯାଇଥିବା ଲୋକମାନଙ୍କର ମୁହଁ ସବୁ ମଧ୍ୟ ଦେଖାଗଲେ, ଯଥା, ତାକୁ ଖରାବେଳେ ପାଣି ଗିଲାସେ ଦେଇ ନ ଥିବା ଜମି ମାଲିକ, ରେଜିଷ୍ଟ୍ରି ଅଫିସରେ ତାଠାରୁ ଦଶଟଙ୍କା ଲାଞ୍ଚ ନେଇଥିବା କିରାଣୀ, ଋଣ ମଞ୍ଜୁରି କରିବା ଅଫିସର, ଜିରାରୁ ଶିରା ବାହାର କରିବା ଆକାଉଣ୍ଟାଣ୍ଟ ଇତ୍ୟାଦି । ତାର ମନ ଅଧ ବିରକ୍ତିରେ ଭରିଗଲା / ଏବଂ ସେ ଚୌକିରୁ ଉଠି ଠିକାଦାରକୁ କାମର ମନ୍ଥର ଗତି ବିଷୟରେ କହିଲା । ଅଧ ଅନୁଗତ ଭାବରେ ଠିକାଦାର ମଜୁରିଆମାନଙ୍କ ଉପରେ ପାଟିକଲା । ସଦାନନ୍ଦ ସିମେଣ୍ଟର ଭାଗମାପ ବିଷୟରେ କହିବାକୁ ଯାଉଥିଲା, କିନ୍ତୁ ସେମାନେ ଆବଶ୍ୟକତାରୁ ବେଶି ସିମେଣ୍ଟ ମିଶାଇ ତାକୁ ଖର୍ଚ୍ଚାନ୍ତ କରାଇବେ, ଏ କଥା ଭାବି ସେ କ୍ଷାନ୍ତ ହେଲା ।

ସେ ବସିଥିବା କାଠପଟା କଷ୍ଟ ଦାୟକ ଥିଲା ଏବଂ ସେଥି ପାଇଁ କାମ ତଦାରଖ କରିବା ବାହାନାରେ ସେ ଛତା ହୋଇ ଏ ପାଖ ସେ ପାଖ ଚାଲିବୁଲି କଲା । ଛତାକୁ ବାଁ ହାତରୁ ଡାହାଣ ହାତକୁ ଓ ଡାହାଣ ହାତରୁ ବାଁ ହାତ କରି ଶେଷରେ ସେ ଛତା ବନ୍ଦ କରି କିଛି ସମୟ ଖରାରେ ଛିଡ଼ା ହେଲା । ସେ ହାତ ଘଣ୍ଟା ଦେଖିଲା, କିନ୍ତୁ ଦିନ ତଥାପି ଅନେକ ବାକି ଥିଲା । ଶେଷରେ ପୁଣି ସେ ଛତାକୁ

ଖୋଲିଲା ଏବଂ କାଠ ପଟାକୁ ଫେରି ଆସି ତା ଉପରେ ଏକ ଆରାମଦାୟକ ଭଙ୍ଗୀରେ ବସିବାକୁ ଚେଷ୍ଟା କଲା । ଠିକାଦାର ସଦାନନ୍ଦର ଗତିବିଧି ଠିକ୍ ବୁଝିଥିଲା ଏବଂ ତାର ନାଡ଼ି ନକ୍ଷତ୍ର ଜାଣିଥିଲା । ସେ ବର୍ତ୍ତମାନ ଜାଣିଲା ଯେ ସଦାନନ୍ଦର ସେ ଦିନ ପାଇଁ କାମ ତଦାରଖ କରିବାର ଉତ୍ସାହ ପୂରା ଭାଙ୍ଗି ଯାଇଛି । ଏଇଟିକୁ ପ୍ରକୃଷ୍ଟ ସମୟ ମନେକରି ସେ କେଉଁଠୁ ଚା ମଗାଇ ସଦାନନ୍ଦକୁ ପିଇବାକୁ ଦେଲା ।

ଚା ପିଇ ପିଇ ସଦାନନ୍ଦ ମନେ ମନେ ଠିକାଦାରକୁ ଏକ ସଚ୍ଚୋଟ ଲୋକ ବୋଲି ସାର୍ଟିଫିକେଟ ଦେଲା ଏବଂ ଖାଲି କପକୁ ତଳେ ରଖିବାବେଳେ ନିଜେ ସାମାନ୍ୟ ପ୍ରଫୁଲ୍ଲ ମନେ କଲା । ଏଥରକ ସେ ନିଜ ଘର କଥା ମନେ ପକାଇବାକୁ ଚେଷ୍ଟା କଲା । ସୁଭଦ୍ରା ସର୍ବଦା ଘରକଥା ବୁଝିବାରେ ଅବହେଳା କରୁନଥିଲା, ସେ ସଦାନନ୍ଦର ସୁଖ ଦୁଃଖର କୌଣସି ଖବର ଅନ୍ତର ରଖୁନଥିଲା । ସୁଭଦ୍ରା ନିଜର ସବୁ ସମୟ ଘର ଚଳାଇବାରେ, ପୂଜା କରିବାରେ ଏବଂ ଘର ତଥା ନିଜକୁ ପରିଷ୍କୃତ ରଖିବାରେ ବିନିଯୋଗ କରୁଥିଲା । ଏତଦ୍ବ୍ୟତୀତ ସୁଭଦ୍ରା ସଦାନନ୍ଦର ଏକ କଠୋର ସମାଲୋଚକ ଥିଲା ଏବଂ ସଦାନନ୍ଦ ଯାହା କିଛି କରୁଥିଲା, ସୁଭଦ୍ରା ସେଥିରେ ଛିଦ୍ର ଦେଖିବାକୁ ପାଉଥିଲା । ପ୍ରତିମୁହୂର୍ତ୍ତରେ ଏଥିପାଇଁ ସଦାନନ୍ଦକୁ ସୁଭଦ୍ରାଠାରୁ ଶାସ୍ତ୍ରୋପଦେଶମାନ ଶୁଣିବାକୁ ହେଉଥିଲା । ସେ ସକାଳେ ଉଠି ନିଜେ ଚା ତିଆରି କରିବାବେଳେ ସୁଭଦ୍ରା ସର୍ବଦା ଶୋଇ ରହୁଥିଲା, ସଦାନନ୍ଦ ଚା ରେ ଚିନି ମିଶାଇବାବେଳେ ସୁଭଦ୍ରାର ନିଦ ହଠାତ୍ ଭାଙ୍ଗି ଯାଉଥିଲା ଏବଂ ସେ ତାକୁ ବେଶୀ ଚିନି ମିଶାଇଥିବାରୁ ଡାକ୍ତରର ଉପଦେଶ ମନେ ପକାଇ ଆକଟ କରୁଥିଲା । ଏଇପରି ଭାବରେ ସାବୁନ ତାକୁ ଗାଧୋଇବାବେଳେ ବ୍ୟବହାର କରିଥିବା ପାଣିର ପରିମାଣ, ତାର ପିନ୍ଧିଥିବା ଜାମାର ରଙ୍ଗର ଉପଯୁକ୍ତତା, ସେଦିନ ଅଫିସ ଗଲାବେଳେ ଛତା ନେବା ନ ନେବାର ଯଥାର୍ଥ୍ୟକୁ ନେଇ ସୁଭଦ୍ରାଠାରୁ ବକ୍ରୋକ୍ତିମାନ ଶୁଣିବାକୁ ପଡ଼ୁଥିଲା । ଏ ସବୁକୁ ଏକ ଦାର୍ଶନିକତାର ଦୃଷ୍ଟିରେ ଅଗ୍ରାହ୍ୟ କରିବାକୁ ଚେଷ୍ଟା କରି ସେ ସଫଳ ହେଉ ନ ଥିଲା ଏବଂ ଏଥିପାଇଁ ଅନେକ ସମୟରେ ତାର କେବଳ ପାରିବାରିକ ଜୀବନ ନୁହେଁ, ସମ୍ପୂର୍ଣ୍ଣ ଜୀବନ ପାଇଁ ମଧ୍ୟ ବିତୃଷ୍ଣା ଆସୁଥିଲା ।

ତାର ଜୀବନର ପ୍ରତିଟି କାର୍ଯ୍ୟକଳାପ ଭଳି ଏଇ ପରିକଳ୍ପିତ ଘରଟି ମଧ୍ୟ ସୁଭଦ୍ରାର ମନୋପଯୋଗୀ ନ ଥିଲା । ଜଣେ ବିଧର୍ମୀଠାରୁ ଜମି କିଣିବା ବିଷୟରେ ତାର ଧାର୍ମିକ ଆପତ୍ତି ଥିଲା ଏବଂ ଜାଗାଟିର ଆକାର ବିଷୟରେ ମଧ୍ୟ ସେ ସୌନ୍ଦର୍ଯ୍ୟଗତ ଦୃଷ୍ଟିରୁ ସନ୍ତୁଷ୍ଟ ନ ଥିଲା । ସୁଭଦ୍ରା ଜମି ମିଳିବାର ଦୁଷ୍କରତା ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲା ଏବଂ ସଦାନନ୍ଦକୁ ବାରମ୍ବାର ଅନ୍ୟ ଜମି କିଣିବା ପାଇଁ ପ୍ରରୋଚିତ କରୁଥିଲା ।

ସଦାନନ୍ଦ ଯେତେବେଳେ ସେଇ ଜାଗାଟି ଉପରେ ଘର କରିବା ପାଇଁ ନକ୍ସା କରିବାରେ ଲାଗିଲା ସୁଭଦ୍ରା ଏ କଥାକୁ ସଦାନନ୍ଦର ଅକ୍ଷମତା ଅଥବା ତାର ମତ ପ୍ରତି ଅବଜ୍ଞା ବୋଲି ଗ୍ରହଣ କଲା ଏବଂ ଏଥିରୁ ତାକୁ ସଦାନନ୍ଦ ସହିତ ତର୍କ ବିତର୍କ କରିବା ପାଇଁ ଉପାଦାନ ମିଳିଲା । ଏହିପରି ଭାବରେ ଘର ତିଆରି ଉଦ୍ୟମର ବିଭିନ୍ନ ପର୍ଯ୍ୟାୟରେ ସଦାନନ୍ଦକୁ ବାହାରର ଅଫିସରମାନଙ୍କ ସହିତ ଖଣ୍ଡଯୁଦ୍ଧ କରିବା ସହିତ ଦୈନିକ ଗୃହଯୁଦ୍ଧର ମଧ୍ୟ ସମ୍ମୁଖୀନ ହେବାକୁ ପଡୁଥିଲା । ଏହି ଗୃହଯୁଦ୍ଧମାନଙ୍କରେ ସଦାନନ୍ଦ ସବୁ ସମୟରେ କ୍ଷତବିକ୍ଷତ ହେଉଥିଲା, କାରଣ ସୁଭଦ୍ରା ପାଖରେ ଏକ ଅମୋଘ ଅସ୍ତ୍ର ଥିଲା ଯାହା ସେ ସମସ୍ତ ଅସମୟରେ ସଦାନନ୍ଦ ଉପରକୁ ନିକ୍ଷେପ କରୁଥିଲା । ସୁଭଦ୍ରା 'ମୁଁ ଏ ଘରେ ରହିବି ନାହିଁ' ବୋଲି କହୁଥିଲା ଏବଂ ତାହା ସଦାନନ୍ଦ ପାଇଁ ଶେଷ କଥା ଥିଲା ।

ସଦାନନ୍ଦର ଜୀବନରେ ଅନ୍ୟ ଦୁଃଖଟି ଥିଲା ରମୁ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ରମୁ କ୍ରମଶଃ ସେମାନଙ୍କ ପାଖରୁ ଦୂରକୁ ଚାଲି ଯାଇ ବର୍ତ୍ତମାନ ଏପରି ଏକ ଦୂରତ୍ୱରେ ପହଞ୍ଚିଥିଲା ଯେଉଁଠାରୁ ଅପରିଚୟର ସୀମାରେଖା ଆରମ୍ଭ ହେଉଥିଲା । ଯଦିଓ ଏକମାତ୍ର ସନ୍ତାନ ଭାବରେ ସଦାନନ୍ଦ ରମୁକୁ ସ୍ନେହ ଓ ଆଦର ଦେବାରେ କେବେହେଲେ କାର୍ପଣ୍ୟ କରି ନ ଥିଲା, କଲେଜରେ ପଢ଼ିବା ବେଳୁ ହିଁ ରମୁ ନିଜର ମନ ଭିତରେ ନିଜ ପାଇଁ ଏକ ସ୍ୱତନ୍ତ୍ର ଘର ତିଆରି କରି ନେଇଥିଲା ଯେଉଁଥିରେ ସଦାନନ୍ଦ ଓ ସୁଭଦ୍ରାଙ୍କ ପାଇଁ ସ୍ଥାନ ନଥିଲା । କଲେଜ ବେଳେ ସେ କୌଣସି ରାଜନୈତିକ କାର୍ଯ୍ୟକଳାପ ସହିତ ସମ୍ପୃକ୍ତ ହୋଇ ଯାଇଥିଲା ଏବଂ ଏ କଥା ସଦାନନ୍ଦର ଅନୁମୋଦିତ ନ ଥିବାରୁ ରମୁ ଜାଣି ଶୁଣି ଘର ସହିତ ତାର ସମ୍ପର୍କ କାଟି ଦେଇଥିଲା । ଯଦିଓ ସେ ସେମାନଙ୍କ ସହିତ ରହୁଥିଲା, ମାନସିକ ସ୍ତରରେ ତାର ବାପ ମାଙ୍କ ସହିତ କୌଣସି ସମ୍ପର୍କ ନ ଥିଲା ଏବଂ ସେ ସଫଳତାର ସହିତ ସେମାନଙ୍କଠାରୁ ନିଜର ନାଭି ଗଣ୍ଠି ବିଚ୍ଛିନ୍ନ କରି ଦେଇଥିଲା । ପରବର୍ତ୍ତୀ ସମୟରେ ସେ ଧର୍ମାନୁବର୍ତ୍ତୀ ହୋଇ ଯାଇଥିଲା ଏବଂ ବିଭିନ୍ନ ପ୍ରକାରର ସାଧୁ ସନ୍ଥମାନଙ୍କ ପାଖକୁ ଯାଇ ସମୟ କଟାଉ ଥିଲା । ରମୁର ରାଜନୀତି ଭଳି ତାର ଧର୍ମାନୁରାଗ ମଧ୍ୟ ସଦାନନ୍ଦର ଅନୁମୋଦିତ ନ ଥିଲା । ରମୁ ବର୍ତ୍ତମାନ ଚାକିରି କରିଥିଲା, କିନ୍ତୁ ସେ କେଉଁଠି କି ଚାକିରି କରି କେତେ ଅର୍ଥ କରୁଥିଲା, ସେ ବିଷୟରେ କେବେ ହେଲେ କାହାକୁ କହୁ ନ ଥିଲା । ସେ ଯେପରି କି ନିଜ ଘରେ ଏକ ଅତିଥି ଥିଲା, ଅଥବା ଏକ ପେଇଙ୍ଗ୍ ଗେଷ୍ଟ ଥିଲା କାରଣ ମାସର ପ୍ରଥମ ସପ୍ତାହରେ ସେ କିଛି ଟଙ୍କା ସୁଭଦ୍ରା ହାତରେ ଦେଇ ଦେଉଥିଲା । ଅନେକ ବର୍ଷ ତଳୁ ହିଁ ସଦାନନ୍ଦ ଓ ସୁଭଦ୍ରା ତା ସହିତ ଯୋଗାଯୋଗ ସ୍ଥାପନ କରିବାର ଚେଷ୍ଟା କରି ବିଫଳ ହୋଇଥିଲେ ଏବଂ ବର୍ତ୍ତମାନ ସେ ଦିଗରେ

ଉଦ୍ୟମ କରିବାରୁ ନିବୃତ୍ତ ହୋଇଥିଲେ । ବରଂ ସେମାନଙ୍କର ଭୟ ହେଉଥିଲା ସେମାନେ ଏ ବିଷୟରେ ଅଧିକ ଉଦ୍ୟମ କଲେ ହୁଏ ତ ରମୁ ଘର ଛାଡ଼ି ଅନ୍ୟ କେଉଁଆଡ଼େ ଚାଲିଯିବ ।

ସଦାନନ୍ଦ ଚାହୁଁଥିଲି ରମୁ ତାର ଘର ତିଆରି ଯୋଜନାରେ ସାମାନ୍ୟ ମନ-ଯୋଗୀ ହେଉ, କିନ୍ତୁ ରମୁ ଏ ସମ୍ପର୍କରେ ସମ୍ପୂର୍ଣ୍ଣ ନିସ୍ପୃହ ଥିଲା । ଅନେକ ସାହସ ସଞ୍ଚୟ କରି ସଦାନନ୍ଦ ଥରେ ମାତ୍ର ରମୁକୁ ଘରର ନକ୍ସା ଦେଖାଇବାରେ ସଫଳ ହୋଇଥିଲା କିନ୍ତୁ ରମୁ ନକ୍ସାକୁ ଅତି ଉପେକ୍ଷାର ସହିତ ଅନାଇ ଖାଲି ହୁଁ ବୋଲି କହି ସେଠାରୁ ବାହାରି ଯାଇଥିଲା । ଘରର ନକ୍ସାରେ ଅବଶ୍ୟ ସଦାନନ୍ଦ ରମୁପାଇଁ କୋଠରୀ ସ୍ଥିର କରିଥିଲା ଏବଂ ସେ କୋଠରୀରୁ ନିଜ କୋଠରୀମାନଙ୍କ ସହିତ ଝରକା କବାଟ ବାରଣ୍ଡାମାନ ଦେଇ ଯୋଗାଯୋଗର ବ୍ୟବସ୍ଥା କରିଥିଲା । କିନ୍ତୁ ସଦାନନ୍ଦ ଜାଣିଥିଲା ଯେ ଯଦି ଭବିଷ୍ୟତରେ ରମୁ ସେମାନଙ୍କ ସହିତ ରହିବାର ନିଷ୍ପତ୍ତି ନିଏ, ସେ ତାର କୋଠରୀର ଝରକା କବାଟ ସବୁ ବନ୍ଦ କରିଦେଇ ସେମାନଙ୍କଠାରୁ ନିଜକୁ ବିଚ୍ଛିନ୍ନ କରିଦେବ । ରମୁ ବିବାହ କରିବା ପାଇଁ ନିଶ୍ଚିତ ଭାବରେ ନାଁ କରି ଦେଇଥିଲି ଏବଂ ଘର ସଂସାର ବସାଇବା ପାଇଁ ତାର କୌଣସି ଯୋଜନା ନ ଥିଲା । ମଝିରେ ମଝିରେ ସେ ଯାଇ କେଉଁ କେଉଁ ଆଶ୍ରମମାନଙ୍କରେ ସମୟ କଟାଇ ଆସୁଥିଲା । ସଦା-ନନ୍ଦର ଅନେକ ସମୟରେ ଭୟ ହେଉଥିଲା ଯେ ରମୁ ହୁଏ ତ ଘର ଛାଡ଼ି କେଉଁଦିନ କୁଆଡ଼େ ଚାଲିଯିବ, କାରଣ ରମୁର ମନ ଭିତରେ ଏକ ଯାଯାବରୀ ନିଶା ଥିଲା ।

କାଠ ପଟାର ଅସ୍ୱସ୍ତିକର ଆସନ ଉପରେ ବସି ଛୁଟି ଦିନର ନିରନ୍ତକର ଅପରାହ୍ଣରେ ଘର କଥା ଭାବିବା ବେଳେ ସଦାନନ୍ଦର ମନ ଏକ ଶ୍ୱାସରୁଦ୍ଧକାରୀ ଦୁଃଖରେ ଭରିଗଲି । ଅନେକ ଶ୍ରମ ଓ କଷ୍ଟରେ ତିଆରି ହେଉଥିବା ଏଇ ନୂଆ ଘର ତାକୁ ଏକ ବିଡ଼ମ୍ବନା ଭଳି ମନେ ହେଲି । ତାର ଅବସର ଗ୍ରହଣର ସମୟ ଆଉ ଅଳ୍ପ କିଛି ବର୍ଷ ବାକିଥିଲା ଏବଂ ତା ପରେ ତାର ଜୀବନର ପ୍ରତ୍ୟାଶା ଆଉ ଗୋଟିଏ ଦୁଇଟି ଦଶକ ଥିଲି । ତା ମନ ଭିତରେ ଅନେକ ପ୍ରଶ୍ନ ଉଠିଲି । କାହାପାଇଁ ଏ ସୁଦୃଢ଼ ଭିତ୍ତି ଏବଂ ଉପଯୁକ୍ତ ଅନୁପାତର ବାଲି ସିମେଣ୍ଟ ମିଶ୍ରିତ କାନ୍ଥର ସୁନ୍ଦର ସମୟଦର୍ଶୀ ଘର ? କାହାପାଇଁ କବାଟ, ଝରକା, ବାରଣ୍ଡା, ଥାକ, ଚଉକି ରହିବା ସ୍ଥାନ ଏବଂ ପର୍ଯ୍ୟାପ୍ତ ପାଣି ଟ୍ୟାପ୍ ? ଏଇ ଘରର ପ୍ରତ୍ୟେକ ଇଟା ଲୁହାଛଡ଼ ସହିତ ଅସହଯୋଗ କରୁଥିବା ତାର ସ୍ତ୍ରୀ ନା ଆଶ୍ରମରେ ଅଧା ପାଦ ରଖିଥିବା ତାର ଯାଯାବରୀ ପୁଅ ? କ'ଣ ଲାଭ ବା ଛାତ ଯଦି କାନ୍ଥସବୁ ଭାଙ୍ଗି ଉଜୁଡ଼ି ପଡ଼େ ବର୍ଷେ କୋଡ଼ିଏଟାରେ ? କେଉଁ ଉପଲବ୍ଧି ଆଶାରେ ସଞ୍ଜ ସକାଳ ସମୟ-ଅସମୟ ଛୁଟି ଦିନର ଖରାବେଳମାନଙ୍କରେ

ଘରର ଦୀର୍ଘାୟୁ ପାଇଁ ତାର ଏ ଉର୍ଦ୍ଧ୍ୱଶ୍ୱାସ ତତ୍ତ୍ୱାବଧାନ ? କେତେ ଜମି ଅବା ଲୋଡ଼ା ମଣିଷର ?

ସଦାନନ୍ଦ ଯେତେବେଳେ ଛତା ବନ୍ଦ କରି ଉଠି ଠିଆ ହେଲା, ଝରି ମନ୍ଥର ଆସୁଥିଲା । ସେ ମିସ୍ତ୍ରୀ କାମ କରୁଥିବା ଚଟାଣ ପାଖକୁ ଗଲା ଏବଂ ଅନ୍ୟମନସ୍କ ଭାବରେ ହାତ ମୁଠାରେ କିଛି ମିଶା ହୋଇଥିବା ବାଲି ସିମେଣ୍ଟ ଉଠାଇଲା । ସେ ମୁଠାକୁ ସାମାନ୍ୟ କୋହଳ କଲା ଏବଂ ସମସ୍ତର ବାଲି ସବୁ ଧୀରେ ଧୀରେ ତା ହାତରୁ ତଳକୁ ଝଡ଼ିପଡ଼ିଲେ । ସେ ଦୀର୍ଘଶ୍ୱାସ ମାରି ଘରକୁ ଫେରିବା ପାଇଁ ପାଦ ବଢ଼ାଇବା ବେଳକୁ ଠିକାଦାର ଆସି ତା ପାଖରେ ଠିଆ ହେଲା । ଠିକାଦାର ମୁହଁକୁ କିଛି ସମୟ ଅନାଇ ସଦାନନ୍ଦ କହିଲା, "ମୁଁ କାଲି ଠିକ୍ ସାଢ଼େ ଆଠଟାକୁ ଆସିବି । ବାଲି ସିମେଣ୍ଟର ଭାଗମାପ ଯେମିତି ଠିକ୍ ରହେ ।"

# ପିକ୍‌ନିକ୍

ଟୁର୍‌ରୁ ଫେରି ଜୟଦେବ ଘରେ ପାଦ ଦେଇଛି କି ନାହିଁ ସୁନନ୍ଦା ତାକୁ କହିଲା, "ବୁଝିଲ, କାଲି ଆମେ ପିକ୍‌ନିକ୍‌ରେ ଯାଇଥିଲୁ।" ଜୟଦେବ ଅଫିସ୍ କାମ ନେଇ ସାମାନ୍ୟ ଚିନ୍ତାଗ୍ରସ୍ତ ଥିଲା ଏବଂ କହିଲା, "ଆଚ୍ଛା ?" ତା ପରେ ସେ ସୁନନ୍ଦାକୁ ତା'ରି ଅନୁପସ୍ଥିତିରେ କେଉଁ କେଉଁ ଠାରୁ ଟେଲିଫୋନ ଆସିଥିଲା ସେ କଥା ପଚାରିଲା। ତା'ରି ଏତେ ବଡ଼ ଖବରଟା ଜୟଦେବର ବିନା ପ୍ରତିକ୍ରିୟାର 'ଆଚ୍ଛା'ରେ ଏମିତି ବ୍ୟର୍ଥ ଯିବ, ଏ କଥା ସୁନନ୍ଦାକୁ ଭଲ ଲାଗିଲା ନାହିଁ। ତେଣୁ ସେ ଅଳ୍ପ ସମୟ ପରେ ଜୟଦେବକୁ ଖାଇବାକୁ ଦେଇ ଦେଇ କହିଲା, ଲେକ୍ ପାଖରେ ଏତେ ଭଲ ପିକ୍‌ନିକ୍ କରିବାର ଜାଗା ଅଛି, ଆମେ ନିଶ୍ଚେ କେବେ ଯିବା। ଅଫିସ୍ ସମୟ ହୋଇ ଆସୁଥିବାରୁ ଜୟଦେବ ଘଣ୍ଟା ଦେଖିଲା ଏବଂ କହିଲା, "ହଁ, ଆର ରବିବାରକୁ ଗଲେ ହେବ।"

ସୁନନ୍ଦା ଭାବିଥିଲା ସେ ପିକ୍‌ନିକ୍ କଥା କହିବା ମାତ୍ରେ ଜୟଦେବ ତାକୁ କେବେ କେଉଁଠାରେ କିଏ କିଏ ଆସିଥିଲେ ଇତ୍ୟାଦି ପ୍ରଶ୍ନମାନ କରି ବ୍ୟସ୍ତ କରିଦେବ। କିନ୍ତୁ ଜୟଦେବ ଥିଲା ଭିନ୍ନ ପ୍ରକୃତିର, ଅଯଥା କୌତୂହଳହୀନ ଲୋକ। ସୁନନ୍ଦାର ମନେ ପଡ଼ିଲା ଅନେକ ଦିନ ତଳେ, ତା'ର ବାହାଘରର ଅଳ୍ପ କିଛିଦିନ ପରେ, ସେ ଜୟଦେବକୁ ତା'ରି ଖୋଲୁ ନ ଥିବା ଛୋଟ ସୁଟକେସକୁ ଖୋଲିବାକୁ କହିଥିଲା। ଏଇ ଛୋଟ ସୁଟକେସରେ ତା'ର ଅନେକ ଛୋଟ ଛୋଟ ବ୍ୟକ୍ତିଗତ ଜିନିଷମାନ ଥିଲା, ଯଥା ତା'ର ଭିନ୍ନ ଭିନ୍ନ ବୟସର ଫଟୋ, ସାଙ୍ଗମାନଙ୍କ ପାଖରୁ ଆଣି ଲୁଚାଇ ପଢ଼ୁଥିବା ବହି, କିଏ ଦେଇଥିବା ରୁମାଲ, ଗୋଲାପୀ ଓ ନୀଳ କାଗଜର ଚିଠି ଇତ୍ୟାଦି। ସୁଟକେସର ଚାବି ହଜି ଯାଇଥିଲା, କିନ୍ତୁ କଣ୍ଟାଦେଇ ଜୟଦେବ ଅତି ସହଜରେ ସୁଟକେସକୁ ଖୋଲିଦେଲା। ସୁନନ୍ଦା ଆଶା କରିଥିଲା, ଜୟଦେବ ସୁଟକେଶକୁ ଖୋଲି ତା ଭିତରେ ଥିବା ବିଭିନ୍ନ ଅଦ୍ଭୁତ ଜିନିଷ ସମ୍ପର୍କରେ ପ୍ରଶ୍ନ କରିବ ଏବଂ ସେମାନଙ୍କ ବିଷୟରେ ଧାଡ଼ି ବିବରଣୀ ଦେଇ ସୁନନ୍ଦା ନିଜର ସମ୍ପୂର୍ଣ୍ଣ ଅତୀତକୁ ଜୟଦେବ ଆଗରେ ଖୋଲି ରଖିଦେବ। କିନ୍ତୁ ତାଲା ଖୋଲିଦେବା ପରେ

ଜୟଦେବ ସୁଟକେସର ତାଲା ଖୋଲିବାକୁ ମଧ୍ୟ ଚେଷ୍ଟା କଲାନାହିଁ । ବରଂ ସୁନନ୍ଦା ଯେତେବେଳେ ତା'ରି ଦୃଷ୍ଟି ଆକର୍ଷଣ କରିବା ପାଇଁ ସୁଟକେସ ଭିତରୁ ଗୋଲାପୀ ଓ ନୀଳ ଚିଠିମାନ ବାହାର କରିବାରେ ଲାଗିଲା, ଜୟଦେବ ସେଠାରୁ ଉଠି ନିଜ କାମରେ ଚାଲିଗଲା ।

ସେଦିନ ଜୟଦେବ ଅଫିସକୁ ଚାଲିଯିବା ପରେ ସୁନନ୍ଦା ତା'ରି ସେଇ ପୁରୁଣା ବାକ୍ସ ଖୋଲି ତା'ରି ବହୁ ଦିନର ଗଚ୍ଛିତ ଜିନିଷ ସବୁ ବାହାରକରି ଦେଖିଲା । ସେ ଦେଖିବାକୁ ଚାହୁଁଥିଲା ଏସବୁ ଜିନିଷ ଭିତରେ ଅରବିନ୍ଦ ସମ୍ପର୍କୀୟ କ'ଣ ଥାଇପାରେ । ସେ ମଳିନ ପଡ଼ିଯାଇଥିବା ରୋମାଞ୍ଚକର ଉପନ୍ୟାସଟି ପଢ଼ିବାକୁ ଆରମ୍ଭ କଲା । କିଛି ପୃଷ୍ଠା ପଢ଼ିବା ପରେ ସେ ଜାଣିଲା ଯେ ଯେଉଁ ବହିଟିକୁ କଲେଜରେ ପଢ଼ିବା ବେଳେ ସେ ଅତ୍ୟନ୍ତ ଅଶ୍ଳୀଳ ବହିବୋଲି ମନେ କରିଥିଲା, ସେଇଟି ପ୍ରକୃତରେ ଏକ ଫିକା ପ୍ରେମ କାହାଣୀ ଥିଲା । ତଥାପି ସେ ବହିଟିକୁ ଶେଷ ପର୍ଯ୍ୟନ୍ତ ପଢ଼ିଲା ଏବଂ ଶେଷରେ ବିରକ୍ତ ହୋଇ ତାକୁ ଫିଙ୍ଗିଦେଲା । ତା ପରେ ସେ ତା'ରି ଚିଠିସବୁ ଖୋଲି ଦେଖିଲା । ଏଥିରୁ ଅନେକ ଚିଠି ଏପରି ବନ୍ଧୁମାନଙ୍କ ପାଖରୁ ଥିଲା, ଯେଉଁମାନଙ୍କ କଥା ତା'ର ଆଦୌ ମନେ ନଥିଲା । ଚିଠିମାନଙ୍କ ମଧ୍ୟରୁ ଅଧିକାଂଶ ତିମିର ମାନସୀ ପାଖରୁ ଥିଲା ଏବଂ ସେସବୁରେ ଅତି ସଂଯତ ଭାଷାରେ ଭଲ ପାଇବାର ପ୍ରଚ୍ଛନ୍ନ ପ୍ରତିଶ୍ରୁତି ଓ ନିବେଦନ ଥିଲା । ସୁନନ୍ଦାର ବର୍ତ୍ତମାନ ଯେତେଦୂର ମନେ ପଡ଼ିଲା, ତା'ରି ଜଣେ ବାନ୍ଧବୀ ତାକୁ ସେମାନଙ୍କର ଚିତ୍ର ଅନୁଯାୟୀ ମାନସୀ ଛଦ୍ମ ନାମରେ ଚିଠି ସବୁ ଲେଖିଥିଲା । ଅନ୍ୟ ଚିଠି ଭିତରୁ ଅନେକ ଚିଠି ନିତାନ୍ତ ମାମୁଲି ସୌଜନ୍ୟପୂର୍ଣ୍ଣ ଚିଠିଥିଲା, ଯାହା ସୁନନ୍ଦା ବୋଧହୁଏ ସେତେବେଳେ ସେଇ ବନ୍ଧୁମାନଙ୍କ ସହିତ ତା'ରି ଗଭୀର ସମ୍ପର୍କ ଦୃଷ୍ଟିରୁ ସଞ୍ଚୟ କରି ରଖିଥିଲା । କିନ୍ତୁ ସେମାନଙ୍କ ସହିତ ବର୍ତ୍ତମାନ ତାର କୌଣସି ସମ୍ପର୍କ ନ ଥିଲା ଏବଂ ସୁନନ୍ଦା ଏ ଚିଠିଗୁଡ଼ିକ ମଧ୍ୟ ଚିରିଦେଲା । ପୁରୁଣା ବନ୍ଧୁମାନଙ୍କ ଭିତରୁ ବର୍ତ୍ତମାନ ତା'ର ସମ୍ପର୍କ ଥିଲା ଏକମାତ୍ର ସମିତା ସହିତ, ଯେ କି ସେମାନଙ୍କ ଘର ପାଖରେ ରହୁଥିଲା । କିନ୍ତୁ ସେ ପୁରୁଣା ଚିଠି ଭିତରେ ସମିତାର କୌଣସି ଚିଠି ନ ଥିଲା ।

ବହି ଓ ଚିଠି ସବୁକୁ ଚିରି ଦେଇ ସେ ଅଧା ବ୍ୟବହାର ହୋଇଥିବା ନୀଳ ରଙ୍ଗର ଚିଠି ଲେଖା କାଗଜ ପ୍ୟାଡ଼କୁ ଅଲଗା କରି ରଖିଲା ଓ ବାକ୍ସରେ ଥିବା ଅନ୍ୟ ଜିନିଷମାନଙ୍କରେ ମନ ଦେଲା । ବର୍ତ୍ତମାନ ଚିହ୍ନିପାରୁ ନଥିବା ଏବଂ ଚିହ୍ନି ପାରିଲେ ମଧ୍ୟ ତା'ର କୌଣସି କୌତୂହଳ ନଥିବା ଅନେକ ମୁହଁର ଫଟୋଗ୍ରାଫକୁ ସେ ଚିରିଦେଲା ଓ ଅବଶିଷ୍ଟ ନିଜସ୍ୱ ଫଟୋସବୁ ନେଇ ସେମାନଙ୍କର ନୂଆ ଆଲବମ ଭିତରେ

ରଖିଲା । ମୀନାକାମର ଶ୍ରେଷ୍ଠ କୃଷ୍ଣଙ୍କର ଚିତ୍ରକୁ ସେ ନେଇ ପୂଜାଘରେ ରଖିଲା ଏବଂ ତା'ର ସ୍କୁଲବେଳର ଗାର୍ଲ ଗାଇଡ୍‌ର ବ୍ୟାଜଟିକୁ ସେ ଝରକା ଦେଇ ବାହାରକୁ ଫିଙ୍ଗିଦେଲା । ଏଇପରି ଭାବରେ ସଂପୂର୍ଣ୍ଣ ବାକ୍‌ସଟି ଖାଲି ହୋଇଯିବା ପରେ ମଧ୍ୟ ସେଥିରୁ ଅରବିନ୍ଦ ସମ୍ପର୍କୀୟ କୌଣସି ଜିନିଷ ବାହାରିଲା ନାହିଁ ଦେଖି ସୁନନ୍ଦା ଏକାଧାରରେ ସାମାନ୍ୟ ନିରାଶ ଓ ଆନନ୍ଦିତ ହେଲା ।

ଅରବିନ୍ଦ ସହିତ ତା'ର କଲେଜ ବେଳର ସଂପର୍କକୁ ସୁନନ୍ଦା ବର୍ତ୍ତମାନ ସମୟର ନିରାପଦ ଦୂରତ୍ୱରୁ ସଠିକ ଭାବରେ ଅନୁଧ୍ୟାନ କରିବାକୁ ଚେଷ୍ଟାକଲା । ଅରବିନ୍ଦ ତା'ର ଦୁଇ କ୍ଲାସ—ନା, ଗୋଟିଏ କ୍ଲାସ, ନା, ଦୁଇ କ୍ଲାସ—ଉପରେ ପାଠ ପଢୁଥିଲା । ସେ ସୌମ୍ୟଦର୍ଶନ ଥିଲା ଏବଂ କଲେଜ ପତ୍ରିକାରେ କବିତା ଲେଖୁଥିଲା । ଏଇ ପିଲାଟି ସହିତ ତା'ର ସାମାନ୍ୟ ମାତ୍ର ପରିଚୟ ଥିଲା, କିନ୍ତୁ ସୁନନ୍ଦା ନିଜର ମନ ଭିତରେ ତାକୁ ନେଇ ଏକ ରୋମାଣ୍ଟିକ ସମ୍ପର୍କର କଳ୍ପନା କରି ନେଇଥିଲା । ସେମାନଙ୍କର ମଝିରେ ମଝିରେ ସାକ୍ଷାତ ହେଉଥିଲା କଲେଜ କରିଡ଼ରରେ । ସେ ସମୟରେ କ୍ଲାସର ଝିଅମାନେ ପ୍ରତିରକ୍ଷା ଦୃଷ୍ଟିରୁ ଦଳ ଦଳ ହୋଇ ଯିବା ଆସିବା କରୁଥିଲେ ଏବଂ ଏଇ ଗୋଷ୍ଠୀରୁ ବାହାରି ଅରବିନ୍ଦ ପାଖକୁ ଯିବାବେଳେ ସୁନନ୍ଦାର ମୁହଁ ଲାଜ ଓ ଝାଳରେ ଆଚ୍ଛନ୍ନ ହୋଇ ଯାଉଥିଲା । ସେମାନଙ୍କର ସାକ୍ଷାତକାର 'ଆପଣ ଆଉ କ'ଣ କବିତା ଲେଖିଛନ୍ତି' ଏବଂ 'ଆପଣଙ୍କର ପଢ଼ାପଢ଼ି କେମିତି ଚାଲିଛି' ଭଳି ସୌଜନ୍ୟ ବିନିମୟରେ ସୀମିତ ଥିଲା । ବର୍ଷକ ପରେ ମଧ୍ୟ ସେମାନଙ୍କ କଥାବାର୍ତ୍ତାର ବ୍ୟକ୍ତିଗତ ଘନିଷ୍ଠତା 'ଆପଣଙ୍କ ଭାଇଙ୍କ ସହିତ ଦେଖା ହୋଇଥିଲା' ଠାରୁ ଆଉ ଆଗକୁ ଯାଇପାରି ନଥିଲା । ତଥାପି ସୁନନ୍ଦାକୁ ଏଇ ସାମାନ୍ୟ ସାକ୍ଷାତକାର ଅତି ଆନନ୍ଦ ଦେଉଥିଲା ଏବଂ ତା'ର ବାନ୍ଧବୀମାନଙ୍କର ଈର୍ଷା ବୋଧହୁଏ ଏଇ ଆନନ୍ଦର ଅନ୍ୟତମ କାରଣ ଥିଲା ।

ବିବାହର ପନ୍ଦର ବର୍ଷର ଅଭିଜ୍ଞତା ପରେ କଲେଜ ବେଳର କଥା ସୁନନ୍ଦାକୁ ବର୍ତ୍ତମାନ ଅତି ଅଦ୍ଭୁତ ବୋଧ ହେଉଥିଲା । ଅତି ସାଧାରଣ ସମ୍ପର୍କକୁ ସେ ଅତିରଞ୍ଜିତ କରି କାହିଁକି ଯେ ଏପରି ଏକ ରୋମାଞ୍ଚକର ରୂପ ଦେଇଥିଲା ଏବଂ ଅରବିନ୍ଦ ଓ ନିଜକୁ ନେଇ ଚମତ୍କାର ସ୍ୱପ୍ନମାନ ଦେଖୁଥିଲା, ସେ ବର୍ତ୍ତମାନ କଳ୍ପନା କରିପାରୁ ନ ଥିଲା । କଲେଜ ବେଳେ ସୁନନ୍ଦା ଅରବିନ୍ଦକୁ ଅନେକ ଦୀର୍ଘ ଚିଠି ଲେଖୁଥିଲା ଏବଂ ଏ ଚିଠିସବୁ ରୋମାଞ୍ଚିତ ଭାବନାରେ ଭରପୂର ଥିଲା । ସୁନନ୍ଦା ଚିଠିର ପ୍ରାରମ୍ଭରେ ଅରବିନ୍ଦ ପାଇଁ ପ୍ରିୟତମ ହୃଦୟେଶ୍ୱର ଇତ୍ୟାଦି ପ୍ରାଚୀନ ସମ୍ବୋଧନରୁ ଆରମ୍ଭ କରି ଡାର୍ଲିଂ ଓ ସୁଇଟହାର୍ଟ ପର୍ଯ୍ୟନ୍ତ ବ୍ୟବହାର କରୁଥିଲା ଏବଂ ଯଦିଓ ସାକ୍ଷାତ ସମୟରେ ସେମାନେ ପରସ୍ପରକୁ ଆପଣ ବୋଲି କହୁଥିଲେ, ଚିଠିରେ ସେ ତାକୁ ତମେ ବୋଲି ଲେଖୁଥିଲା ।

ଏ ଚିଠିଗୁଡ଼ିକୁ ସେ ସମ୍ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ଚିରି ଦେଉଥିଲି, କିନ୍ତୁ ଏଇ ଏକପକ୍ଷୀୟ ଚିଠିମାନଙ୍କ ମାଧ୍ୟମରେ ସେ ଅରବିନ୍ଦଙ୍କୁ ନିଜପାଖକୁ ଆଣି ପାରୁଛି ବୋଲି ମନେ କରୁଥିଲି । ରାତିରେ ଶୋଇବା ବେଳେ ଅନେକ ସମୟଯାଏ ସେ ଅରବିନ୍ଦ କଥା ଭାବୁଥିଲା ଏବଂ ଏହା ତା'ରି ସୁଖର ଏକ ସୁନ୍ଦର ମାଧ୍ୟମ ହେଉଥିଲା । ଅରବିନ୍ଦଙ୍କୁ ଏଇ ସମୟମାନଙ୍କରେ ନିଜର ଭାବୀ ପତି ଭାବରେ କଳ୍ପନା କରି ସୁନନ୍ଦା ଲଜ୍ଜିତା ଓ ପୁଲକିତ ହେଉଥିଲି ।

ଯେତେବେଳେ ସୁନନ୍ଦା ଅରବିନ୍ଦଙ୍କୁ ପ୍ରଥମ ପ୍ରକୃତ ଚିଠି ଲେଖିଲା, ତାହାଥିଲି ଅତି ଛୋଟ ଏବଂ ରୋମାଞ୍ଚ-ରହିତ ଥିଲା । "ପ୍ରିୟ ଅରବିନ୍ଦ ବାବୁ," ସୁନନ୍ଦା ଲେଖିଥିଲି, "ଆପଣ ଭାଇଙ୍କ ପାଖକୁ ଦେଇଥିବା ଚିଠିଟି ପାଇବା ପୂର୍ବରୁ ଭାଇ ଏଠାରୁ ଚାଲି ଯାଇଥିଲେ । ମୁଁ ଚିଠିଟି ତାଙ୍କ ନୂଆ ଠିକଣାରେ ପଠାଇ ଦେଇଛି । ଆପଣ ତଳ ଲିଖିତ ଠିକଣାରେ ତାଙ୍କ ପାଖକୁ ଲେଖି ପାରନ୍ତି । ନମସ୍କାରସହ । ଆପଣଙ୍କର ସୁନନ୍ଦା ।" ଏତିକି ଲେଖିଲାବେଳେ ସୁନନ୍ଦାର ହାତ ଥରୁଥିଲି ଏବଂ ସେ ଭାବୁଥିଲା ଯେ କୌଣସି ଅଲୌକିକ ପ୍ରେରଣା ବଳରେ ଅରବିନ୍ଦ ତାର ଚିଠିରୁ ସେ କହିବାକୁ ଚାହୁଁଥିବା ଅନ୍ତର୍ନିହିତ ମର୍ମ ବୁଝି ପାରିବ ଏବଂ ସେ ଲେଖିଥିବା ଶବ୍ଦମାନଙ୍କରୁ ପ୍ରିୟତମ, ତମେ, ସ୍ନେହର ସହିତ ଇତ୍ୟାଦି ଗୋପନୀୟ ଅର୍ଥ ଆହରଣ କରିପାରିବ । ସୁନନ୍ଦା ଏ ଚିଠିର କୌଣସି ଉତ୍ତର ପାଇ ନ ଥିଲା, କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ସେ ଅରବିନ୍ଦର ଚିଠିଟି, ଯାହାକୁ ସେ ଭାଇ ପାଖକୁ ପଠାଇ ନ ଥିଲା, ନିଜ ପାଖରେ ରଖିଥିଲା ଏବଂ, ଚିଠିଟିକୁ ବାରମ୍ବାର ପଢ଼ି, ଦେଖି, ଛୁଇଁ ଅରବିନ୍ଦକୁ ନିଜର ନିକଟତର କରିବାକୁ ଚେଷ୍ଟା କରୁଥିଲା । ଅବଶ୍ୟ ସେ ଚାହିଁଥିଲେ ସ୍ୱାଭାବିକ ଭାବରେ ଭାଇକୁ ଅରବିନ୍ଦ ବିଷୟରେ ପଚାରି ପାରିଥାନ୍ତା, କିନ୍ତୁ ସେ ଏ ବିଷୟରେ ଅହେତୁକ ଲଜ୍ଜା ଅନୁଭବ କରୁଥିଲା ଏବଂ ଅରବିନ୍ଦ ବିଷୟରେ ଆଉ କୌଣସି ଖବର ରଖିପାରି ନଥିଲା ।

ହଠାତ୍ ସେଦିନ, ଏତେ ବର୍ଷର ବ୍ୟବଧାନ ପରେ, ଅରବିନ୍ଦର ଖବର ଦେଲି ସମିତା । ଅରବିନ୍ଦ ସମିତାର ସ୍ୱାମୀର ବନ୍ଧୁ ଥିଲି ଏବଂ କାମରେ ତାଙ୍କ ସହରକୁ ଆସି ସମିତା ଘରେ ରହୁଥିଲି । ସମିତା ମଝିରେ ମଝିରେ ସୁନନ୍ଦାକୁ ଟେଲିଫୋନ କରୁଥିଲି ଏବଂ ତାକୁ ଅରବିନ୍ଦର ଆସିବା ଖବର ଜଣାଇଥିଲି । ଜୟଦେବ କାମରେ ସହର ବାହାରକୁ ଯାଇଥିବାବେଳେ ଅରବିନ୍ଦର ଏପରି ହଠାତ ସେମାନଙ୍କ ସହରରେ ପହଞ୍ଚିବା ସୁନନ୍ଦାକୁ କିପରି ଅଦଭୁତ, ଦୈବପ୍ରେରିତ ମନେ ହେଲି । ଅରବିନ୍ଦକୁ ଦେଖା କରିବାପାଇଁ ତା' ମନରେ ପ୍ରବଳ ଇଚ୍ଛା ଥିଲି, କିନ୍ତୁ ସେ ନିଜର ସ୍ୱାମୀର ଉପସ୍ଥିତିରେ ହିଁ ଅରବିନ୍ଦ ସହିତ ସାକ୍ଷାତ କରିଥିଲେ ଖୁସି ହୋଇଥାନ୍ତା । ସେ ଯେପରି ଅଧିକ ଆଗ୍ରହୀ ଥିଲି ଜୟଦେବର ଅରବିନ୍ଦ ସହିତ ପରିଚୟ ବିଷୟରେ; କିନ୍ତୁ ପରଦିନ ହିଁ ଅରବିନ୍ଦ

ଚାଲିଯିବାର ଥିଲା ଏବଂ ସେମାନଙ୍କର ସାକ୍ଷାତକାର ସମ୍ଭବ ନ ଥିଲା । ସମିତା ଯେତେବେଳେ ତାକୁ ରବିବାର ଦିନ ପିକନିକ ଯିବା କଥା କହିଲା, ସୁନନ୍ଦା ପ୍ରଥମେ ମନା କରିଦେଲା । କିନ୍ତୁ ପୁଣି ସମିତା ଯେତେବେଳେ ଅରବିନ୍ଦକୁ ତାଙ୍କ ଘରକୁ ନେଇ ଆସିବା କଥା କହିଲା, ସୁନନ୍ଦା କହିଲା, "ଆଚ୍ଛା, ମୁଁ ପିକନିକକୁ ଆସିବି । ସେଇଠାରେ ଦେଖା ହେବ ।"

ସେମାନେ ଯେତେବେଳେ ରବିବାର ଦିନ ତାକୁ ସାଙ୍ଗରେ ନେବାପାଇଁ ତା' ଘରକୁ ଆସିଲେ, ସୁନନ୍ଦାର ଅନେକ ବର୍ଷ ପରେ ଅରବିନ୍ଦ ସହିତ ଦେଖାହେଲା । ଅରବିନ୍ଦ ଜୟଦେବଠାରୁ ବେଶୀ ବୟସ୍କ ଦେଖା ଯାଉଥିଲା ଏବଂ ସେ ବର୍ତ୍ତମାନ ଜୟଦେବଠାରୁ ଦେଖିବାକୁ ମଧ୍ୟ କୌଣସି ଗୁଣରେ ବେଶି ସୁନ୍ଦର ନଥିଲା । ସେ ଚଷମା ଲଗାଉଥିଲା, କିନ୍ତୁ ତା'ର ଚଷମା ଜୟଦେବର ଚଷମା ଭଳି ବାଇଫୋକାଲ ଗ୍ଲାଶ ଚଷମା କି ନା ସୁନନ୍ଦା ଜାଣି ପାରିଲା ନାହିଁ । ଅରବିନ୍ଦ ବ୍ୟାଙ୍କରେ ଚାକିରି କରୁଥିଲା । ହୁଏତ ବହୁତ ଦିନରୁ ବିବାହ ମଧ୍ୟ କରି ସାରିଥିଲା ଏବଂ ଆଉ କବି ଭଳି ଦେଖାଯାଉ ନ ଥିଲା । ଜୟଦେବ ସହିତ ତାକୁ ବହୁତ ଭାବରେ ତୁଳନା କରିସାରିବା ପରେ ସୁନନ୍ଦା ସବୁ ବିଷୟରେ ଜୟଦେବକୁ ବେଶି ମାର୍କ ଦେଲା, କିନ୍ତୁ ଅରବିନ୍ଦ ତାକୁ ଯେତେବେଳେ କେମିତି ଅଛ—କେମିତି ଅଛନ୍ତି/ ନୁହେଁ—ବୋଲି ପଚାରିଲା, ସୁନନ୍ଦାର ହୃଦୟର ଗତି ସାମାନ୍ୟ ଚଞ୍ଚଳ ହୋଇଗଲା । ଗାଡ଼ିରେ ବସିବାବେଳେ ସୁନନ୍ଦା ଅତି ସତର୍କତାର ସହିତ ଅରବିନ୍ଦର ସ୍ପର୍ଶରୁ ନିଜର ଦେହକୁ ଯଥାସମ୍ଭବ ଦୂରରେ ରଖିଲା ଏବଂ ଲେକ୍ ପାଖରେ ଓହ୍ଲାଇ ଘାସ ଉପରେ ବସିବା ବେଳେ ମଧ୍ୟ ସେ ଏ କଥା ପ୍ରତି ସଚେତନ ରହିଲା ।

ଅବଶ୍ୟ ସୁନନ୍ଦାର ଏତେ ସତର୍କତାର କୌଣସି ପ୍ରୟୋଜନ ନ ଥିଲା, କାରଣ ଅରବିନ୍ଦର ତା' ପ୍ରତି କୌଣସି ଆଗ୍ରହ ବା କୌତୂହଳ ଥିବାର ଜଣା ପଡ଼ୁ ନ ଥିଲା । ଅରବିନ୍ଦ ସମିତାର ସ୍ୱାମୀଙ୍କୁ ସେମାନଙ୍କ ଚାକିରିର ଭଲମନ୍ଦ ବିଷୟରେ କହୁଥିଲା ଏବଂ ସେମାନେ ପରସ୍ପରର ଦରମା, ମହଙ୍ଗାଭତ୍ତା ଇତ୍ୟାଦି ବିଷୟରେ ଗମ୍ଭୀର ଆଲୋଚନାରେ ବ୍ୟସ୍ତ ଥିଲେ । ସୁନନ୍ଦା ସେମାନଙ୍କର କଥା ଶୁଣି ବୋର୍ ହେଉଥିଲା ଏବଂ ସେଠାରେ ଜୟଦେବର ଉପସ୍ଥିତି ଚାହୁଁଥିଲା । ସେ ଭାବିଥିଲା, ସମିତା ଆସି ସେମାନଙ୍କର କଲେଜ ବେଳର କଥା ମନେ ପକାଇ କଥାର ମୋଡ଼କୁ ବଦଳାଇବ, କିନ୍ତୁ ସମିତା ଖାଇବା ଜିନିଷକୁ ସଜାଡ଼ିବାରେ ବ୍ୟସ୍ତ ଥିଲା । ଏଇପରି ଭାବରେ ପିକ୍‌ନିକ୍‌ଟି ସୁନନ୍ଦା ପାଇଁ ଆନନ୍ଦ ରହିତ ଥିଲା ଏବଂ ଅରବିନ୍ଦ ସହିତ ତା'ର କଥାବାର୍ତ୍ତା ଆଦୌ ଭାବ-ଉଦ୍ଦୀପକ ନ ଥିଲା । ସୁନନ୍ଦାର ମନେ ପଡ଼ିଲା କଲେଜ ବେଳେ ସମିତା ତା'ର ଓ ଅରବିନ୍ଦର ସମ୍ପର୍କକୁ ନେଇ ତାକୁ ଅନେକ ପ୍ରକାର ପରିହାସ କରୁଥିଲା । ସୁନନ୍ଦା ଆଶା କରୁଥିଲା

ସମିତା ତାକୁ ସେଇ କଲେଜ ବେଳର କଥା ମନେ ପକାଇ ଲଜ୍ଜିତ କରାଇବ । କିନ୍ତୁ ହୁଏତ ସମିତା ସେ ସବୁ କଥା ଭୁଲି ଯାଇଥିଲା ଅଥବା ବର୍ତ୍ତମାନ ଜାଣିଶୁଣି ସେ ସୁନନ୍ଦା ଶୁଣିବାକୁ ଚାହୁଁଥିବା କଥାରୁ ତାକୁ ବଞ୍ଚିତ କରୁଥିଲା ।

ପିକ୍‌ନିକରୁ ଫେରି ସୁନନ୍ଦା ଅତ୍ୟନ୍ତ ନିରାଶ ବୋଧକଲା । ସେ ଭାବିଥିଲା ଅରବିନ୍ଦ ସହିତ [illegible] ପୁନର୍ବାର ସାକ୍ଷାତକାର ତା'ର ଅନେକ ଦିନ ତଳର ରୋମାଞ୍ଚକର କଳ୍ପନାର ଏକ ପୁନରାବୃତ୍ତି ହେବ ଏବଂ ଏଥିପାଇଁ ସେ ଜୟଦେବ ପାଖରେ ନିଜକୁ ଅପରାଧୀ ମନେ କରିବ । କିନ୍ତୁ ବର୍ତ୍ତମାନର ଅନୁଭୂତି ତା' ପାଇଁ କେବଳ ରୋମାଞ୍ଚ ରହିତ ନୁହେଁ ବରଂ ଅତ୍ୟନ୍ତ ଗଦ୍ୟମୟ ଥିଲା, ଯାହା ତା'ର ପୁରୁଣା ଜୀବନର ଭାବପ୍ରବଣ ଅନୁଭବର ଯଥାର୍ଥତା ପ୍ରତି ସନ୍ଦେହ ଜନ୍ମାଉ ଥିଲା । କିନ୍ତୁ ସୁନନ୍ଦା କଲେଜ ବେଳେ ଅରବିନ୍ଦ ପାଖକୁ ଲେଖିଥିବା ଅସଂଖ୍ୟ ପ୍ରେମପତ୍ର କଥା ମନେ ପକାଇଲା ଏବଂ ମନେ ମନେ ଜୟଦେବ ପାଖରୁ କ୍ଷମା ଚାହିଁଲା ।

ସେଦିନ ଜୟଦେବ ଅଫିସରୁ ଫେରିବା ପରେ ସୁନନ୍ଦା ପୁଣି ଥରେ ସେମାନଙ୍କର ପିକ୍‌ନିକ କଥା ଉପସ୍ଥାପିତ କରି ତାକୁ କହିଲା, "ଆମେ ପିକ୍‌ନିକ ଯିବା ଦିନ ସମିତାର ସ୍ୱାମୀ ତମକୁ କାହିଁକି ଖୋଜୁଥିଲେ ।" ପିକ୍‌ନିକ କଥାକୁ ଏଡ଼ାଇ ଦେଇ ଜୟଦେବ କହିଲା, "କୋଉ ବିଷୟରେ କିଛି କହୁଥିଲେ କି ?" ସୁନନ୍ଦା ସାମାନ୍ୟ ବିରକ୍ତିର ସହିତ କହିଲା, "ନା ।" ସେଦିନ ଶୋଇ ଶୋଇ ବହି ପଢ଼ୁଥିବା ବେଳେ ସୁନନ୍ଦା ଜୟଦେବକୁ କହିଲା, "ଆର ରବିବାର ଦିନ ପିକ୍‌ନିକ ଯିବା କଥା ମନେ ରହିଲା ତ ?" ଜୟଦେବ ଅନ୍ୟମନସ୍କ ଭାବରେ କହିଲା, "କେଉଁ ତାରିଖ ତ ? ତମେ ସମସ୍ତଙ୍କୁ ଖବର ଦେଇଦେବ ।" କିନ୍ତୁ ରବିବାର ଦିନ ପିକ୍‌ନିକ ଯିବା କଥା ହେଲା ନାହିଁ । ପ୍ରକୃତ ପକ୍ଷରେ ସୁନନ୍ଦା ହିଁ ଏଥିପାଇଁ କୌଣସି ଯତ୍ନ କଲା ନାହିଁ । କାରଣ ଏତେ ଶୀଘ୍ର ପୁଣି ଥରେ ପିକ୍‌ନିକ ଯିବାପାଇଁ ସମିତାକୁ ଡାକିବା ତାକୁ ଆଦୌ ଯୁକ୍ତିଯୁକ୍ତ ମନେ ହେଲା ନାହିଁ ।

ତା'ପରେ ବିଭିନ୍ନ ପ୍ରକାର ଭାବରେ ସୁନନ୍ଦା ଜୟଦେବ ଆଗରେ ସେମାନଙ୍କର ପିକ୍‌ନିକ ଯାଇଥିବା କଥା ଉତ୍ଥାପନ କରିବାକୁ ଚେଷ୍ଟା କଲା । ଯଥା, "ଆମେ ଯୋଉଦିନ ପିକନିକ ଯାଇଥିଲୁ, ତା' ପରେ ଆଉ ବର୍ଷା ହୋଇ ନାହିଁ । ଅଥବା ଲେକ୍ ଯିବାର ରାସ୍ତା ବହୁତ ଖରାପ । ଅଥବା, ସମିତା ଖୁବ ଭଲ ସ୍ୟାଣ୍ଡଉଇଚ ତିଆରି କରି ପାରେ । ଜୟଦେବ, ଯେ କି ଅତ୍ୟନ୍ତ ସିଧା ପ୍ରକୃତିର ଥିଲା, ସୁନନ୍ଦାର ଇଙ୍ଗିତପୂର୍ଣ୍ଣ କଥା ସବୁ ବୁଝିପାରୁ ନଥିଲା ଏବଂ ଏପରି ସବୁ ଉତ୍ତର ଦେଉଥିଲା ଯାହା ସୁନନ୍ଦା ପାଇଁ ନୈରାଶ୍ୟଜନକ ଥିଲା । ଯଥା, ଖବର କାଗଜରେ ବାହାରି ଥିଲା ମନସୁନ ଏଥର ଦଶ ଦିନ ଡେରିରେ ଆସିବ । ଅଥବା ମ୍ୟୁନିସିପାଲିଟିର ନୂଆ ନିର୍ବାଚନ ପର୍ଯ୍ୟନ୍ତ କାମ ସବୁ

ଏମିତ ଗୃହିଥିବ । ଅଥବା ତମେ ସେଇ ନୂଆ ରେସ୍ତୋରାଁରେ ଖାଇଛ ? ଏପରିକି ଯୋଉଦିନ ସୁନନ୍ଦା ଜୟଦେବକୁ ବାଧ୍ୟକରି ସମିତା ଘରକୁ ନେଇଗଲା, ସେଠାରେ ମଧ୍ୟ କେହି କଥାବାର୍ତ୍ତାରେ ପିକନିକ କଥା ଅଥବା ସେଥିରେ ତାଁର ଓ ଅରବିନ୍ଦର ଏକାନ୍ତ ଉପସ୍ଥିତିର ଦୈବ ସଂଯୋଗ ବିଷୟରେ କହିଲେ ନାହିଁ । ସୁନନ୍ଦା ଯେତେବେଳେ ସମିତାକୁ 'ଆମେ ଆଉଥରେ ପିକ୍‌ନିକ୍ ଯିବା' ବୋଲି କହିଲା, ସେଇ ମୁହୂର୍ତ୍ତରେ ସମିତାର ସ୍ୱାମୀ ଅଫିସର କୌଣସି ଏକ ଗୁରୁତର କଥା କହି ଜୟଦେବର ଧ୍ୟାନ ଆକର୍ଷଣ କରିନେଲା ।

ଏପରି ଭାବରେ ବାରମ୍ବାର ବିଫଳ ହୋଇ ସୁନନ୍ଦା ଶେଷରେ ସିଧା ସଳଖ ଜୟଦେବକୁ ପିକ୍‌ନିକ କଥା କହିବ ବୋଲି ଠିକ୍ କଲା । ଜୟଦେବ ଅଫିସକୁ ବାହାରିବା ବେଳେ ଅନେକ ସାହସ ସଞ୍ଚୟ କରି ସୁନନ୍ଦା ତାକୁ 'ତମ ସାଙ୍ଗରେ ଜରୁରୀ କଥା ଅଛି, ଅଫିସରୁ ଫେରିଲେ କହିବ' ବୋଲି କହିଲା । ଯଦି ଅଫିସରୁ ଫେରି ଜୟଦେବ ତାକୁ ସେଇ ଜରୁରୀ କଥା ବିଷୟରେ ପଚାରିଥାନ୍ତା, ସୁନନ୍ଦା ହୁଏତ ତାକୁ ସବୁକଥା କହିଥାନ୍ତା । କିନ୍ତୁ ଜୟଦେବ ତାକୁ କିଛି ପଚାରିଲା ନାହିଁ ଏବଂ ସୁନନ୍ଦା ପକ୍ଷରେ ଏ କଥା ଉଠାଇବା ସମ୍ଭବ ହେଲାନାହିଁ । ସୁନନ୍ଦା ଏଥରକ ବେଶି ବେଶି ବ୍ୟତିବ୍ୟସ୍ତ ହେଲା ଏବଂ ପିକ୍‌ନିକ ଘଟଣାଟି ତାର ମନଭିତରେ ଏକ ଭାର ସ୍ୱରୂପ ରହିଲା । ସେଦିନ ଜୟଦେବ ଅଫିସ ଚାଲିଯିବା ପରେ ସେ ନିଜର ମନ ସ୍ଥିର କଲା ଏବଂ ସେଇ ପୁରୁଣା ନୀଳ ରଙ୍ଗର କାଗଜ ଆଣି ଜୟଦେବ ପାଖକୁ ଚିଠି ଲେଖିବାକୁ ବସିଲା ।

ପ୍ରିୟତମ ହୃଦୟେଶ୍ୱର ଇତ୍ୟାଦି ଦେଇ ଆରମ୍ଭ କରିଥିବା ଚିଠିମାନ ସେ ଛାଡ଼ି ଦେଲା ଏବଂ ଏଥରକ ସେ ସିଧାସାଦା ଚିଠି ଲେଖିଲା : ମୁଁ ତମକୁ ଅନେକ ଦିନରୁ ସେ ଦିନର ପିକ୍‌ନିକ ଯିବାକଥା କହିବି କହିବି ବୋଲି କହିପାରୁ ନାହିଁ । ପିକ୍‌ନିକରେ ଅରବିନ୍ଦ ମଧ୍ୟ ଥିଲା, ଯେ ମୋର କଲେଜ ବେଳର ଚିହ୍ନା । ଯଦିଓ ମୋର ବନ୍ଧୁମାନେ ଅରବିନ୍ଦ ଓ ମତେ ନେଇ ଅନେକ ପ୍ରକାର କଥା କହୁଥିଲେ, ବିଶ୍ୱାସ କର, ଆମ ଭିତରେ ସେ ଭଳି କୌଣସି ସଂପର୍କ ନଥିଲା । ଏପରିକି ସେଦିନ ପିକ୍‌ନିକରେ ମଧ୍ୟ ମୁଁ ଅରବିନ୍ଦ ସହିତ ବେଶି କଥାବାର୍ତ୍ତା କରି ନଥିଲି । ତଥାପି ତମର ଅନୁପସ୍ଥିତିରେ ଅରବିନ୍ଦ ସହିତ ସେଇ ପିକ୍‌ନିକକୁ ଯିବା ମୋର ଉଚିତ ନଥିଲା । ଆଶା ତମେ ଭୁଲ ବୁଝିବ ନାହିଁ । ସେ ଚିଠିଟିକୁ ବାରମ୍ବାର ପଢ଼ିଲା ଓ ଶେଷରେ ନେଇ ଜୟଦେବର ଟେବୁଲ ଉପରେ ରଖିଲା ।

ଏବଂ ସେଦିନ ଜୟଦେବ ଅଫିସରୁ ଫେରିବା ପୂର୍ବରୁ ସେ ସେଠାରୁ ଚିଠିଟି ନେଇ ଆସି କଲେଜବେଳେ ଅରବିନ୍ଦ ପାଖକୁ ଲେଖିଥିବା ଅସଂଖ୍ୟ ଚିଠିଭଳି ତାକୁ ମଧ୍ୟ ଚିରି ପକାଇଦେଲା ।

ନଅ ବର୍ଷ

## ତୃତୀୟ ପୃଥିବୀ

ଯୋଉ ଫ୍ଲାଇଟରେ ମାମାଜୀ ଆସି ସକାଳ ପାଞ୍ଚଟାରେ ପହଞ୍ଚିବାର ଥିଲା, ସେଇଟି ଆସି ପହଞ୍ଚିଲା ଦିନ ସାଢ଼େ ଏଗାରଟା ବେଳେ । ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଏୟାରପୋର୍ଟ ଅନେକ ବେଶି ଦୂର; ସେଥିପାଇଁ ଆଗ ଦିନ ରାତିରୁ ହିଁ ଆସି ମୁଁ ଏୟାରପୋର୍ଟରେ ଅପେକ୍ଷା କରୁଥିଲି । ଡିସେମ୍ବର ଶୀତ ରାତିରେ ଏ ଏକ କଷ୍ଟଦାୟକ ଅନୁଭୂତି ଥିଲା ଏବଂ ପ୍ଲେନ ଡେରିରେ ଆସିବା ଖବର ପାଇ ମୁଁ ଆହୁରି ବିରକ୍ତ ହେଲି । ମାମାଜୀ କିନ୍ତୁ ମୋର ନିଜର ମାମୁଁ ବି ନଥିଲେ । ବମ୍ବେରୁ ମୋର ବନ୍ଧୁ ଖବର ଦେଇଥିଲା ଯେ ତାର ମାମୁଁ ଦିଲ୍ଲୀରେ କୌଣସି ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବା ପାଇଁ ଆସୁଛନ୍ତି ଏବଂ ମୁଁ ତାଙ୍କୁ ଯେମିତି ସାହାଯ୍ୟ କରେ । ମାମାଜୀ ଆମେରିକାରେ ଅର୍ଥନୀତିର ପ୍ରଫେସର ଥିଲେ ଏବଂ ମୁଁ ଗୋଟିଏ କଲେଜରେ ଅର୍ଥନୀତି ପଢ଼ାଉ ଥିବାରୁ ମୋର ବନ୍ଧୁ ମୋତେ ଏଇ କାର୍ଯ୍ୟ ଭାର ଦେଇଥିଲା । ବର୍ତ୍ତମାନ ଶୀତ ସକାଳେ ଏୟାରପୋର୍ଟରେ ଦଶଘଣ୍ଟା ବସିବା ପରେ ମୁଁ ଯଦିଓ ବିରକ୍ତ ହେଉଥିଲି ବମ୍ବେରୁ ଚିଠିଟି ପାଇବା ପରେ ମୁଁ ଯେ ସାମାନ୍ୟ ଖୁସି ହୋଇ ନଥିଲି ତା ନୁହେଁ । କାରଣ, ଏଇ ଅଜ୍ଞାତ ମାମାଜୀଙ୍କ ମାଧ୍ୟମରେ କେବେ ମତେ ଆମେରିକା ପଢ଼ିବାକୁ ଯିବାର ସୁଯୋଗ ମିଳିପାରେ, ମୋର ମନ ଭିତରେ ତାର ଏକ ସୂକ୍ଷ୍ମ ଆଶା ମଧ୍ୟ ରହିଥିଲା ।

ଦିନ ବାରଟା ବେଳେ ବାହାରୁ ଆସୁଥିବା ଯାତ୍ରୀମାନଙ୍କ ଭିତରୁ ସେଇଁ ଗୋଲଗାଲ, ଦାଢ଼ିବାଲା, ମୋଟା ଚଷମା ଲଗାଇଥିବା ଓ ଓଭରକୋଟ ପିନ୍ଧା ହସ ହସ ମୁହଁ ଭଦ୍ରଲୋକଙ୍କୁ ମୁଁ ମାମାଜୀ ବୋଲି ଭାବିଥିଲି, ସେ ହିଁ ପ୍ରକୃତରେ ମାମାଜୀ ଥିଲେ । ତାଙ୍କୁ ଆଣିବା ପାଇଁ ସମ୍ମିଳନୀ ପକ୍ଷରୁ ଦୁଇଜଣ ଭଦ୍ରବ୍ୟକ୍ତି ମଧ୍ୟ ଯାଇଥିଲେ, କିନ୍ତୁ ମୁଁ ଯେତେବେଳେ ମୋର ପରିଚୟ ଦେଲି, ସେ ମତେ ତାଙ୍କ ଭଣଜାର ସାଙ୍ଗ ବୋଲି ଆସି ଖୁସିରେ ହାତ ମିଳାଇ କୁଣ୍ଢାଇ ପକାଇଲେ ଏବଂ ସେ ଦୁଇଜଣ ଭଦ୍ରବ୍ୟକ୍ତିଙ୍କୁ ଉପେକ୍ଷା କରି ମୋ ସହିତ କଥାବାର୍ତ୍ତା କରିବାରେ ଲାଗିଲେ । ତାଙ୍କ

ପାଇଁ ଅନୁଷ୍ଠାନ ପକ୍ଷରୁ ଗାଡ଼ି ଆସିଥିଲା ଏବଂ ପଞ୍ଚ ତାରକା ହୋଟେଲରେ ରହିବାର ମଧ୍ୟ ବ୍ୟବସ୍ଥା ହୋଇଥିଲା । ଗାଡ଼ିରେ ବସିବା ପରେ ମାମାଜୀ ତାଙ୍କ ମୁଣ୍ଡରୁ ଟୋପି ବାହାର କଲେ । ତାଙ୍କ ମୁଣ୍ଡ ସମ୍ପୂର୍ଣ୍ଣ ଚନ୍ଦା ଥିଲା ଏବଂ ତାଙ୍କର ଏଇ ଚନ୍ଦା ମୁଣ୍ଡ ମତେ ତାଙ୍କର ହସହସ ମୁହଁର ସମ୍ପୂର୍ଣ୍ଣ ପରିପୂରକ ବୋଲି ମନେ ହେଲା ।

ହୋଟେଲରେ ତାଙ୍କର କୋଠରୀ ଭିତରକୁ ଯାଇ ମାମାଜୀ ସେଇ ଲୋକ ଦୁଇଟିଙ୍କୁ ବିଦାୟ ଦେଇଦେଲେ ଏବଂ ମତେ ବସିବାକୁ କହିଲେ । ସେମାନେ ଚାଲିଯିବା ପରେ ମାମାଜୀ ମୋ ସାଙ୍ଗରେ ଆହୁରି ଘନିଷ୍ଠତାର ସହିତ କଥାବାର୍ତ୍ତା କଲେ ଏବଂ ମୁଁ ଲକ୍ଷ୍ୟ କଲି ଯେ ତାଙ୍କର ହାବ ଭାବ ଓ ଇଂରାଜୀ ଉଚ୍ଚାରଣ ମଧ୍ୟ ହଠାତ୍ ବଦଳି ଗଲା । ଏ ପର୍ଯ୍ୟନ୍ତ ସେ ତାଙ୍କର ଆମେରିକାନ ସୁରପାତରେ କଥା କହୁଥିଲେ ଏବଂ ତାଙ୍କର ବେଶ ପୋଷାକ, ଆଚାର ବ୍ୟବହାର, ଚାଲିଚଳଣ ପୂର୍ଣ୍ଣମାତ୍ରାରେ ସାହେବ ଭଳି ଥିଲା । ବର୍ତ୍ତମାନ ମୋ ସହିତ କଥା କହିବା ବେଳେ, ଯଦିଓ ସେ ପୋଷାକ ବଦଳାଇ ନଥିଲେ, ତାଙ୍କର ସାହେବତ୍ୱ ଅନେକ କମି ଯାଇଥିଲା ବୋଲି ମୋର ମନେ ହେଲା, ଏବଂ ମାମାଜୀ ମତେ ଅଧିକ ଆତ୍ମୀୟ ଜଣା ପଡ଼ିଲେ । ମାମାଜୀ ଏଥର ତାଙ୍କର ସୁଟକେସ ଖୋଲି ଜିନିଷ ପତ୍ର ସଜାଇବାରେ ଲାଗିଲେ ଏବଂ ମୁଁ ତାଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ ଛୋଟ ସୁଟକେସଟିକୁ ଉଠାଇ ନେଇ ତାଙ୍କ ପାଖରେ ରଖିଲି । ସେ ତାଙ୍କର କୋଟ ଟାଙ୍ଗିବା ଛାଡ଼ି ଦେଇ ସୁଟକେସକୁ ନେଇ ଟେବୁଲ ଉପରେ ରଖିଲେ ଏବଂ ଟେଲିଫୋନରେ ରୁମ ସର୍ଭିସକୁ ଡାକି ସୋଡ଼ା ଓ ବରଫର ଅର୍ଡର ଦେଲେ । ତା ପରେ ସେ ସୁଟକେସ ଖୋଲିଲେ, ତା' ଭିତରେ ଅନେକ ପ୍ରକାରର ମଦ ବୋତଲ ଥିଲା । ସେ ସବୁକୁ ଟେବୁଲ ଉପରେ ସଜାଇ ରଖୁ ରଖୁ ମୋ ଆଡ଼କୁ ଆଖି ମାରି ମାମାଜୀ କହିଲେ, "ମୁଁ ହପ୍ତାଏ ପାଇଁ ଏଠାକୁ ପ୍ରସ୍ତୁତ ହୋଇ ଆସିଛି ।"

ନିଜର ଜିନିଷପତ୍ର ସଜାଡ଼ି ସାରି ମାମାଜୀ ଯାଇଁ ଝରକା ପାଖରେ ଠିଆ ହୋଇ ବାହାରକୁ ଅନାଇଲେ । ବାହାରେ ଶୀତ ଦିନର କଅଁଳ ଖରାରେ ଗଛପତ୍ର ସବୁ ଅତି ଜୀବନ୍ତ ଦେଖାଯାଉଥିଲେ । ଝରକା ପାଖରୁ ଫେରିଆସି ମାମାଜୀ ଦୀର୍ଘନିଶ୍ୱାସ ଛାଡ଼ିଲେ ଏବଂ ଖଟ ପାଖର ଛୋଟ ଟେବୁଲ ଉପରେ ସଜା ହୋଇଥିବା ଦୁଇଟି ପତ୍ର ସମେତ ଗୋଲାପ ଫୁଲଟିକୁ ହାତରେ ଉଠାଇ ତାକୁ କିଛି ସମୟ ଅନାଇଲେ । ମତେ କହିଲେ, "ଦେଖୁଚ ?" ମୁଁ ଫୁଲଟିକୁ ହାତରେ ନେବା ପାଇଁ ତାକୁ ଅନ୍ୟ ପାଖରୁ ଧରିଲି, କିନ୍ତୁ ମାମାଜୀ ତାକୁ ହାତରୁ ଛାଡ଼ିଲେ ନାହିଁ । ଆମେ ଦୁହେଁ କିଛି ସମୟ ମାମାଜୀଙ୍କ ହାତରେ ଥିବା ସଜ ଫୁଲଟିକୁ ଅନାଇଲୁ । ମାମାଜୀଙ୍କ ମୁହଁ

ସାମାନ୍ୟ ବିସ୍ମୟ ଜଣାଗଲା ଏବଂ ଉତ୍ତର ଆଶାରେ ମୁଁ ତାଙ୍କ ମୁହଁକୁ ଅନାଇଲି । ମାମାଙ୍କ ଆଉଥରେ ଦୀର୍ଘଶ୍ୱାସ ନେଇ କହିଲେ, "ନା, କିଛି ନୁହେଁ !" ସେଠାରୁ ଅଣି ସେ ଦୁଇଟି ଗିଲାସରେ ପାନୀୟ ଢାଳିଲେ ଏବଂ ସେଥିରେ ସୋଡ଼ା ଓ ବରଫ ମିଶାଇ ମୋ ଆଡ଼କୁ ଗୋଟିଏ ଗିଲାସ ବଢ଼ାଇ ଦେଲେ । ଏଥରକ ନିଜର ଗିଲାସଟିକୁ ନେଇ ସେ ଆରାମ ଚଉକି ଉପରେ ବସିଲେ ଏବଂ ଗିଲାସଟିକୁ ଏକା ନିଃଶ୍ୱାସରେ ଅଧା ଶେଷ କରି ପୁଣି ମୋ ସହିତ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ ।

ମାମାଜୀ ଏଗାର ବର୍ଷ ହେଲା ଆମେରିକାରେ ଥିଲେ । ମଫସଲର ଭଦ୍ର ପରିବାରରେ ଜନ୍ମ, ପାଠ ପଢ଼ି ଏମ୍. ଏ. ପାସ କରିବା ପରେ ସେ ସରକାରୀ ବୃତ୍ତି ନେଇ ବିଦେଶ ଯାଇଥିଲେ ଏବଂ ସେଠାରେ ପି. ଏଚ୍. ଡ଼ି. କରି ଅଧ୍ୟାପନା ଆରମ୍ଭ କରିଥିଲେ । ତା ପରେ ସେ ସେଠାରେ ବାହା ହୋଇଥିଲେ ଓ ଆମେରିକାର ନାଗରିକତା ନେଇ ସେଠାରେ ରହି ଯାଇଥିଲେ । ତାଙ୍କର ଆଉ ନିଜର ଗାଁ ସହିତ କୌଣସି ସଂପର୍କ ନଥିଲା, କେବଳ ଚିଠି ପତ୍ର ବ୍ୟତୀତ । କେବେ କେମିତି ଭାରତକୁ ସଭା ସମିତିରେ ଯୋଗ ଦେବାକୁ ଆସିଲେ ସେ ଦିଲ୍ଲୀ ବମ୍ବେରେ କିଛି ଦିନ ରହି ପୁଣି ଫେରି ଯାଉଥିଲେ । ବର୍ତ୍ତମାନ ତାଙ୍କର ହୋଟେଲରେ ବସି ଆମେ ଅର୍ଥନୀତି ଶିକ୍ଷା ବିଷୟରେ କଥାବାର୍ତ୍ତା କରୁଥିଲୁ । ମାମାଙ୍କ ବଡ଼ ମଜାର ଲୋକ ଥିଲେ ଏବଂ ମୁଁ ଯେତେ ଦୂର ଜାଣିଲି, ପିଇବାକୁ ଭଲ ପାଉଥିଲେ । କାରଣ ମୁଁ ମୋର ପ୍ରଥମ ଗିଲାସଟିଏ ଧରି ଧୀରେ ଧୀରେ ପିଇବା ଭିତରେ ସେ ତାଙ୍କର ତୃତୀୟ ଗିଲାସ ପିଇବାକୁ ଆରମ୍ଭ କରିଥିଲେ ଏବଂ ମତେ ଆହୁରି ଶୀଘ୍ର ଗିଲାସ ଖାଲି କରିବା ପାଇଁ ଉଦ୍‌ବୋଧନ ଦେଉଥିଲେ ।

ମାମାଜୀ ଯେଉଁ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବାକୁ ଦିଲ୍ଲୀ ଆସିଥିଲେ, ସେଇଟି ଥିଲା ବିକାଶଶୀଳ ଦେଶମାନଙ୍କର ଦାରିଦ୍ର୍ୟ ସଂପର୍କୀୟ । ଏଇ ବିଷୟର ଗୋଷ୍ଠୀରେ ମାମାଜୀ ଯେଉଁ ନିବନ୍ଧ ପଢ଼ିବାର ଥିଲା ତାର ଶୀର୍ଷକ ଥିଲା ଦାରିଦ୍ର୍ୟର ସଂଜ୍ଞା । ତାଙ୍କର କାଗଜ ପତ୍ରରୁ ବାହାର କରି ମାମାଙ୍କ ମତେ ଏଇ ନିବନ୍ଧଟି ପଢ଼ିବାକୁ ଦେଲେ, ଯାହାର ଆରମ୍ଭ ଥିଲା ଏହି ପ୍ରକାର ।

"କୌଣସି ଦେଶ ସମୃଦ୍ଧ ଅଥବା [illegible]ଦ୍ର ନୁହେଁ; କେବଳ ବ୍ୟକ୍ତି ବିଶେଷ ହିଁ ପେଟପୂରା ଖାଇବାକୁ ପାଆନ୍ତି ଅଥବା [illegible]ରୋଗିକଲ ରହନ୍ତି, ସ୍ୱାସ୍ଥ୍ୟବାନ ରହନ୍ତି, ଅଥବା ଦୁର୍ଗୁଣ ରହନ୍ତି, ପାଠ ପଢ଼ନ୍ତି ଅଥବା ମୂର୍ଖ ରହନ୍ତି ଏବଂ ସୁଖୀ ରହନ୍ତି ଅଥବା ଦୁଃଖ କଷ୍ଟରେ ଚଳନ୍ତି । ପ୍ରଥମରୁ ଏହି ଅତି ସାଧାରଣ କଥା କହିବାର ଉଦ୍ଦେଶ୍ୟ ହେଉଛି ଯେ ଆମେମାନେ ସଭା ସମିତି, ବିଷୟର ଗୋଷ୍ଠୀ ଏବଂ ଆଲୋଚନା ମାନଙ୍କରେ ଏଇ ସାମାନ୍ୟ କଥାଟି ଭୁଲି ଯାଇଥାଉ !"

ମୁଁ କାଗଜରୁ ମୁହଁ ଉଠାଇ ମାମାଜୀଙ୍କ ଆଡ଼କୁ ଅନାଇଲି । ମାମାଜୀ ଯଦିଓ ମୋ ଆଡ଼କୁ ଅନାଇ ଥିଲେ ତାଙ୍କର ଦୃଷ୍ଟି ମତେ ଭେଦ କରି, ହୋଟେଲର ବହୁମହଲା ପର୍ଦ୍ଦାକୁ ଟପି ପଥର କାନ୍ଥକୁ ଲଂଘି କେଉଁ ସୁଦୂର ସ୍ଥାନରେ ନିବଦ୍ଧ ଥିଲା । ମୋର ହଠାତ ମନେ ହେଲା ମାମାଜୀ ଯେମିତି ସମୟ ଓ ସ୍ଥାନର ବନ୍ଧନ ସବୁକୁ କାଟି ଦେଇ ତାଙ୍କ ପିଲାଦିନର କୌଣସି ଦାରିଦ୍ର୍ୟ ପ୍ରପୀଡ଼ିତ ଅନୁଭବ ଆଡ଼କୁ ଅନାଇଛନ୍ତି ।

ହଠାତ୍ ମାମାଜୀଙ୍କ ଆଖି ମୋ ଉପରେ ପଡ଼ିଲା ଆଉ ମାମାଜୀ ମତେ କହିଲେ, "ଜଲଦି ଗିଲାସ ଖାଲି କର; ତମେ ଆଜି ଏଇଠି ଖାଇବ ।" ସେ ଟେଲିଫୋନ ଉଠାଇ ଖାଇବାର ବରାଦ କଲେ ଏବଂ ପୁଣି ତାଙ୍କର ଗ୍ଲାସ ଭର୍ତ୍ତି କଲେ । ମୁଁ ତାଙ୍କ ସହିତ ତାଙ୍କର ଲେଖା ବିଷୟରେ ଆଲୋଚନା କରିବାକୁ ଚେଷ୍ଟା କଲି । ମାମାଜୀ ମତେ ବୁଝାଇଲେ, "ଦାରିଦ୍ର୍ୟ ସମସ୍ୟାର ବିଶ୍ଳେଷଣ କଲାବେଳେ ଆମେ ସବୁବେଳେ ଦରିଦ୍ର ଦେଶ କଥା ଭାବିଥାଉ ଏବଂ ଦାରିଦ୍ର୍ୟର ପରିମାପ ପାଇଁ ଜି. ଏନ୍. ପି., ପର କ୍ୟାପିଟା ଇନ୍‌କମ୍, ରେଟ୍ ଅଫ ଗ୍ରୋଥ ଇତ୍ୟାଦିର ସାହାଯ୍ୟ ନେଉଥାଉ । ମୁଁ କିନ୍ତୁ ସେଇ ଦରିଦ୍ର ବ୍ୟକ୍ତି ବିଶେଷକୁ କିପରି ଦାରିଦ୍ର୍ୟର ସଂଜ୍ଞା ଲଗୁ ହେବ, ସେ ଚେଷ୍ଟା କରିଛି । ସେଥିପାଇଁ ମୁଁ ଏହାକୁ ସାଇକୋଡାଇନାମିକ୍‌ସ୍ ଅଫ ପଭର୍ଟି ନାଁ ଦେଇଛି । ମୋର ସମୀକ୍ଷା ଅନୁସାରେ ଆୟ, ଦୈନିକ କ୍ୟାଲୋରି ଗ୍ରହଣ, ସ୍ୱାସ୍ଥ୍ୟର ଅବସ୍ଥା ଇତ୍ୟାଦି ବାହାରେ ମଧ୍ୟ ମାନସିକ ସ୍ତରରେ ଦାରିଦ୍ର୍ୟର ଏକ ନିଜସ୍ୱ ପରିଭାଷା ଅଛି । ଯଥା, ଗରିବ ଲୋକଟିଏ ସାମୂହିକ ସମାଜରେ ଅଂଶ ଗ୍ରହଣ କରି ପାରେ ନାହିଁ, ତାର ଶୈଶବ ଅତି ଶୀଘ୍ର ସମାପ୍ତ ହୋଇଯାଏ, ସେ ସବୁବେଳେ ନିଜକୁ ଅସହାୟ ମନେ କରେ, ସେ ଭବିଷ୍ୟତ ପାଇଁ ଯୋଜନା କରିପାରେ ନାହିଁ ଏବଂ ସେ ଭାଗ୍ୟବାଦୀ ହୋଇଯାଏ ଇତ୍ୟାଦି । ଏଇ ଲକ୍ଷଣ ସବୁ ହେଉଚି ଦାରିଦ୍ର୍ୟର ସଂସ୍କୃତି ।"

ଏ ସବୁ ମୋ ପାଇଁ ନୂଆ କଥା ଥିଲା, କିନ୍ତୁ ମାମାଜୀ ମତେ ଯେତେବେଳେ ଏ କଥା ବୁଝାଉଥିଲେ, 'ମୁଁ ଦାରିଦ୍ର୍ୟର ସଂଜ୍ଞା କଥା ଭାବୁ ନଥିଲି; ମୁଁ ଭାବୁଥିଲି ସେମାନଙ୍କର ପାଠର ଉତ୍କର୍ଷତା ଏବଂ ଆମ ନିଜ ଜ୍ଞାନର ଦାରିଦ୍ର୍ୟ ବିଷୟରେ । ଯାହା ହେଉ, ଏଇ ସମୟରେ ଆମର ଖାଇବାର ଆସିଗଲା ଏବଂ ଦାରିଦ୍ର୍ୟର ସଂଜ୍ଞା କଥା ଭୁଲିଯାଇ ଆମେ ପର୍ଯ୍ୟାପ୍ତ କ୍ୟାଲୋରି ସଂପନ୍ନ ଲଞ୍ଚ ଖାଇବାରେ ମନ ଦେଲୁ । ମାମାଜୀ ଏଥରକ ହଠାତ ଅଦ୍ଭୁତ ଭାବରେ ଚୁପ ହୋଇଗଲେ । ସେ ପୁଣି ତାଙ୍କର ଗ୍ଲାସ ଭର୍ତ୍ତି କରିବାକୁ ଯାଉଥିଲେ, କଣ ଭାବି ସେଇ ଫୁଲଟି ଆଡ଼କୁ ଅନାଇଲେ ଓ ବୋତଲକୁ ବନ୍ଦ କରି ରଖିଦେଲେ । ମୁଁ ଯେତେବେଳେ ତାଙ୍କ ପାଖରୁ ବିଦାୟ ନେଲି, ସେ ମତେ କହିଲେ, "ମୁଁ ଟିକିଏ ବିଶ୍ରାମ ନେଇ ଯାଏ; କାଲିଠାରୁ ଏକାଠି ସେମିନାର୍‌କୁ ଯିବା ।"

ତା’ପରଦିନଠାରୁ ସେମିନାରର ବିଭିନ୍ନ ପର୍ବମାନ ଆରମ୍ଭ ହେଲା । ମନ୍ତ୍ରୀଙ୍କର ଉଦ୍‌ଘାଟନ ପରେ କଫି ପରେ ବକ୍ତୃତା ପରେ ବିଶ୍ରାମ ଓ ତା’ପରେ ପୁଣି ବିଭିନ୍ନ ବକ୍ତାଙ୍କର ଭାଷଣ । ଏଇ ସମ୍ମିଳନୀକୁ ପୃଥିବୀର ବିଭିନ୍ନ ଦେଶର ବିଶେଷଜ୍ଞମାନେ ଆସିଥିଲେ ଏବଂ ନିଜର ବକ୍ତୃତାରେ ସେମାନଙ୍କର ପ୍ରଭୂତ ବିଦ୍ୱତ୍ତାର ପରିଚୟ ଦେଉଥିଲେ, ଯାହା ମୋ ପାଇଁ ବିଶେଷ ଉପାଦେୟ ଥିଲା । ଏଇ ବକ୍ତୃତାମାନଙ୍କ ସହିତ ଲଞ୍ଚ ଡିନର ଓ ଟି’ର ପର୍ବ ଚାଲୁଥିଲା ଏବଂ ସଂଧ୍ୟାବେଳେ ମନୋରଂଜନ ପାଇଁ ସାଂସ୍କୃତିକ କାର୍ଯ୍ୟକ୍ରମର ମଧ୍ୟ ବ୍ୟବସ୍ଥା ହୋଇଥିଲା । ଦିନେ ସକାଳବେଳାର ଅଧିବେଶନରେ ମାମାଜୀ ତାଙ୍କର ନିବନ୍ଧ ପଢ଼ିଲେ । ତାଙ୍କର ଲେଖାର ବିଷୟବସ୍ତୁ, ଭାଷଣ ଶୈଳୀ ଇତ୍ୟାଦି କୌଣସି ଦୃଷ୍ଟିରେ ଅନ୍ୟମାନଙ୍କଠାରୁ ନିକୃଷ୍ଟ ନ ଥିଲା ଏବଂ ମୁଁ ମାମାଙ୍କ ପାଇଁ ଗର୍ବ ଅନୁଭବ କଲି । ନିଜର ଲେଖାଟି ପଢ଼ି ସାରିବା ପରେ ମାମାଜୀ ମଝିରେ ମଝିରେ ଆସି ମୋ ପାଖରେ ବସୁଥିଲେ ଏବଂ ସେମିନାରର ବିଭିନ୍ନ କାର୍ଯ୍ୟ-କଳାପ ସହିତ ମତେ ବାଧ୍ୟକରି ଜଡ଼ିତ କରାଉଥିଲେ । ଏବେଇକି ପ୍ରତିନିଧିମାନେ ଯେଉଁ ଦିନ ତାଜମହଲ ଦେଖିବାକୁ ଗଲେ, ମାମାଜୀ ମତେ ମଧ୍ୟ ଟାଣି ନେଇଗଲେ ।

ଶେଷ ଆଡ଼କୁ ସମ୍ମିଳନୀ ପ୍ରତି ସମସ୍ତଙ୍କର ଆଗ୍ରହ ଫିକା ପଡ଼ି ଆସିବାର ଜଣାଗଲା । ଯେଉଁଦିନ ପ୍ରତିନିଧିମାନେ ଗୋଟିଏ ଦରିଦ୍ର ଗାଁ ଦେଖିବା ପାଇଁ ବାହାରିଲେ, ମାମାଜୀ ଯିବା ପାଇଁ ମନା କରିଦେଲେ । ମୁଁ ପଚାରିବାରୁ କହିଲେ, "ମୋ ମତରେ ଦରିଦ୍ର ଦେଶ, ଦରିଦ୍ର ପ୍ରଦେଶ ବା ଦରିଦ୍ର ଗାଁ ବୋଲି କିଛି ନାହିଁ । ଲୋକମାନେ ହିଁ ଦରିଦ୍ର, ଏବଂ ସେମାନଙ୍କୁ ଯେ କୌଣସି ଜାଗାରେ ଦେଖି ହେବ ।" ଅନ୍ୟମାନେ ଗାଁ ଦେଖିବାକୁ ଚାଲିଯିବା ପରେ ସମ୍ମିଳନୀରୁ ଯେଉଁ ଖାଲି ସମୟ ମିଳିଲା, ଆମେ ସେଇ ସମୟଟି ଆସି ମାମାଜୀଙ୍କ କୋଠରୀରେ କଟାଇଲୁ । କହିବା ବାହୁଲ୍ୟ, କୋଠରୀରେ ପହଞ୍ଚିବା କ୍ଷଣି ମାମାଜୀ ସୋଡ଼ା ଓ ବରଫର ଅର୍ଡର ଦେଲେ ଏବଂ ସେ ଯେତେବେଳେ ମୋ ଗିଲାସରେ ଦ୍ୱିତୀୟ ଓ ତୃତୀୟ ପେଗ ପାନୀୟ ଢାଳିଲେ, ମୁଁ ବାଧା ଦେଇ ନାହିଁ । ମାମାଜୀଙ୍କର ଦିଲ୍ଲୀରେ ଆଉ ତିନି ଦିନ ରହିବାର ଥିଲା ଏବଂ ଏଇ ଦିନ ମାନଙ୍କରେ ଆମେ କଣ କଣ କରିବୁ, ମାମାଜୀ ତାର ସବିସ୍ତାର କାର୍ଯ୍ୟକ୍ରମ କଲେ । ଏକତିରିଶ ତାରିଖ ଦିନ ତାଙ୍କର କୌଣସି କାମ ନଥିଲା ଏବଂ ଏଥିପାଇଁ ଆମେ ଠିକ୍ କଲୁ ଯେ ମାମାଜୀ ସେ ଦିନଟି ମୋ ସହିତ କଟାଇବେ । ଖାଇ ସାରିବା ପରେ ମାମାଜୀ ମତେ ଛାଡ଼ିବା ପାଇଁ ହୋଟେଲ ଲବି ପର୍ଯ୍ୟନ୍ତ ଆସିଲେ ଏବଂ ତା’ପରେ ତାଙ୍କର ହଠାତ ହୋଟେଲ ପାଖରେ ଥିବା ପାର୍କରେ କିଛି ସମୟ ବସିବା ପାଇଁ ଇଚ୍ଛା ହେଲା । ହୋଟେଲ ପଛ ପାଖ ଦେଇ ଚାଲି ଯାଉ ଯାଉ ଆମେ ଏଇ ପାଞ୍ଚ ମହଲା ଉଚ୍ଚ ହୋଟେଲର ଛାଇରେ ଗୋଟିଏ ଭିଖାରୀକୁ ଶୋଇଥିବାର ଦେଖିଲୁ ।

ମାମାଜୀ ମୋ ଆଡ଼କୁ ଅନାଇଲେ ଏବଂ ସେ କିଛି କହିବା ଆଗରୁ ମୁଁ କହିଲି, "ବ୍ୟକ୍ତି ବିଶେଷ ହିଁ ଦରିଦ୍ର ।"

ତା ପର ଦିନ ମୁଁ କେମିତି ମାମାଜୀଙ୍କୁ ଆପ୍ୟାୟିତ କରିବି, ସେଇ ଚିନ୍ତାରେ ଲାଗିଲି । ଅନେକ ଭାବିବା ପରେ ମୁଁ ମୋର ବନ୍ଧୁକୁ ଫୋନ କଲି, ଯେ କି ମାମାଜୀଙ୍କର ବମ୍ବେରେ ଥିବା ଭଣଜାକୁ ମଧ୍ୟ ଜାଣିଥିଲା । ମୋର ଏଇ ବନ୍ଧୁ ରେଡ଼ିମେଡ଼୍ ପୋଷାକ ରପ୍ତାନୀର ବ୍ୟବସାୟ କରୁଥିଲା ଏବଂ ଅତି ଅଳ୍ପ ସମୟ ଭିତରେ ବେଶ ସମ୍ପନ୍ନ ହୋଇ ଯାଇଥିଲା । ମୁଁ ତାକୁ ଯେତେବେଳେ ଆନ୍ତର୍ଜାତିକ ସେମିନାର ଏବଂ ମାମାଜୀଙ୍କ କଥା କହିଲି, ସେ ବିଶେଷ ମନୋଯୋଗୀ ଜଣାଗଲା ନାହିଁ ଏବଂ ସେମିନାରକୁ ବାଣିଜ୍ୟ ମନ୍ତ୍ରୀ ଉଦ୍‌ଘାଟନ କରିଥିଲେ କି ବୋଲି ପଚାରିଲା । ସେ କାଳେ ଫୋନ ରଖିଦେବ, ଏଇ ଭୟରେ ତାକୁ କହିଲି, "ଏଇ ବର୍ଷେ ଦି ବର୍ଷ ଭିତରେ ମାମାଜୀ ନିଶ୍ଚେ ନୋବେଲ ପ୍ରାଇଜ ପାଇବେ ।" ଏଥର ସେ ଟିକିଏ ଉତ୍ସାହିତ ଜଣାଗଲା ଏବଂ ମତେ ପଚାରିଲା, "ମାମାଜୀ କୋଉଠି ପଢ଼ାନ୍ତି ବୋଲି କହୁଥିଲୁ, ଆମେରିକାରେ ? ସେଠି ସେ କୋଉ ସିନେଟରକୁ ଜାଣନ୍ତି ?" ମୁଁ ଏଥରକ ଅନୁରୂପ ମିଥ୍ୟାର ଆଶ୍ରୟ ନେଇ କହିଲି, "ତାଙ୍କର ନୂଆ ନୂଆ ତଥ୍ୟମାନଙ୍କ ଯୋଗୁ ମାମାଜୀ ଅନେକ ସିନେଟରମାନଙ୍କ ସହିତ ପରିଚିତ । କାହିଁକି ?" ସେ କହିଲା, "ନା, କିଛି ନୁହେଁ । ତେବେ ଆମେରିକା ମଝିରେ ମଝିରେ ପୋଷାକ ଆମଦାନୀର କୋଟା କମାଇ ଦେଉଛି । କେତେବେଳେ ଦରକାର ହୋଇପାରେ ।" ତା'ପରେ ମୁଁ ତାକୁ କହିବା ଆଗରୁ ସେ ଦରକାରୀ କଥା କହିଲା, "କଣ, ଗାଡ଼ି ଦରକାର ? ମୁଁ ପଠାଇ ଦେବି ।" ମୁଁ ତାକୁ ଏକତିରିଶ ତାରିଖ କଥା କହିବାରୁ ସେ ମତେ ଓ ମାମାଜୀଙ୍କୁ ଏକ ପ୍ରସିଦ୍ଧ ହୋଟେଲରେ ରାତି ଏଗାରରୁ ସାଢ଼େ ବାରଟା ଭିତରେ ପିବା ପାଇଁ ନିମନ୍ତ୍ରଣ ଦେଲା ।

ଏକତିରିଶ ତାରିଖ ସନ୍ଧ୍ୟାରେ ମୁଁ ମୋର ସାଙ୍ଗର ଗାଡ଼ି ନେଇ ମାମାଜୀଙ୍କ ହୋଟେଲରେ ପହଞ୍ଚିଲା ବେଳକୁ ମାମାଜୀ ତାଙ୍କ ବ୍ରିଫ୍‌କେସ ହାତରେ ଧରି ହୋଟେଲ ଲବିରେ ମୋ ପାଇଁ ଅପେକ୍ଷା କରୁଥିଲେ । ଗାଡ଼ିରେ ବସି ଆମେ ମୋ ଘରକୁ ଆସିଲୁ ଏବଂ ଘର ଭିତରକୁ ପଶି ମାମାଜୀ ପ୍ରଥମେ ତାଙ୍କର ବ୍ରିଫ୍‌କେସ ଖୋଲି ଅଧା ହୋଇଥିବା ବୋତଲ ସବୁକୁ ମୋର ଟେବୁଲ ଉପରେ ସଜାଇ ରଖିଲେ । ତା'ପରେ ସେ ଆସି ଦିବାନ ଉପରେ ଗୋଡ଼ ହାତ ଉଠାଇ ଚକା ପକାଇ ବସିଲେ । ମୁଁ ଲକ୍ଷ୍ୟ କଲି ଯେ ଅତି ଅନାୟାସରେ ମାମାଜୀ ତାଙ୍କର ଆମେରିକାନ ଅବତାରରୁ ସମ୍ପୂର୍ଣ୍ଣ ଭାରତୀୟ ସ୍ୱରୂପକୁ ଓହ୍ଲାଇ ଆସି ପାରୁଥିଲେ । ମତେ ଦୁଇଟି ଗିଲାସ ଆଣିବାକୁ କହି ମାମାଜୀ କହିଲେ, "ତମର ଏଇ ପାଖରେ କୋଉଠି ବରା ପକୋଡ଼ି ଦୋକାନ

ନାହିଁ ?" ମୁଁ କହିଲି, "ମାମାଜୀ, ଅଛି; କିନ୍ତୁ ଟିକିଏ ଦୂରକୁ ଯିବାକୁ ହେବ ।" ମାମାଜୀ ଗିଲାସ ଭର୍ତ୍ତି କରୁ କରୁ କହିଲେ, "ଠିକ ଅଛି; ଗାଡ଼ି ନେଇ କରି ଯିବା ।" ହାତରେ ଗିଲାସ ଧରି ମାମାଜୀ ଓ ମୁଁ ଗାଡ଼ିରେ ବସିଲୁ ଏବଂ ରାସ୍ତା କଡ଼ରେ ଥିବା ମୁନ୍ନା ମିଆଁର ଭଜା ଦୋକାନ ପାଖରେ ପହଞ୍ଚିଲୁ । ମାମାଜୀ ଅତି ସନ୍ତୋଷର ସହିତ ପକୋଡ଼ି ଖାଇଲେ ଏବଂ କିଛି ସମୟ ପରେ ଗାଡ଼ିରୁ ଓହ୍ଲାଇ ମିଆଁ ସହିତ ପକୋଡ଼ିରେ ପଡ଼ିଥିବା ଲୁଣ ଓ ଲଙ୍କାର ପରିମାଣ ବିଷୟରେ ଯୁକ୍ତି ତର୍କ ମଧ୍ୟ କଲେ ।

ଆମେ ଘରକୁ ଫେରିବା ପରେ ମାମାଜୀ କହିଲେ, "ବୁଝିଲି ଭଣଜା, ଆଜି ସଂଧ୍ୟାଟା ଭଲରେ କଟିଲା ।" ମୁଁ ତାଙ୍କୁ ମନେ ପକାଇ ଦେଲି ଯେ ଆମର ରାତି ଏଗାରଟାରେ ନିଉ ଇୟର ଇଭ୍‌ର ନିମନ୍ତ୍ରଣ ବି ଅଛି । ମାମାଜୀ କହିଲେ, "ଯାହା ହଉ ଲୁଣ ଟିକିଏ ବେଶି ପଡ଼ିଥିଲେ କଣ ହେଲା, ମିଆଁ ବିଚରା ପକୋଡ଼ି ଭଲ ତିଆରି କରିଥିଲା ।" ମୋର ମନେ ହେଲା ମାମାଜୀ ଯେମିତି କୌଣସି ପୁରୁଣା ସ୍ମୃତିକୁ ମନେ ପକାଇ ଏଇ ସଂଧ୍ୟାକୁ ଉପଭୋଗ କରୁଥିଲେ । ମୁଁ ତାଙ୍କୁ କହିଲି, "ମାମାଜୀ, ଏଥରକ ଆପଣଙ୍କ ଗାଁକୁ ଯିବାକୁ ଇଚ୍ଛା ହେଲା ନାହିଁ ?"

ମାମାଜୀ ମତେ ଜବାବ ନ ଦେଇ ଗିଲାସଟି ଟିକିଏ ପିଇଲେ । ମୁଁ ପୁଣି ଜବାବ ଅପେକ୍ଷା କରୁଛି, ସେ ଗିଲାସକୁ ସମ୍ପୂର୍ଣ୍ଣ ଖାଲି କଲେ ଏବଂ ଟେବୁଲ ପାଖକୁ ଯାଇ ପୁଣି ଗିଲାସ ଭର୍ତ୍ତି କଲେ । ଏଥରକ ସେ ସିଧା ସଳଖ ମୋ ଆଡ଼କୁ ଅନାଇ ଠିଆ ହେଲେ ଏବଂ ମୁଁ ଦେଖିଲି ଏଇ ମିନିଟକର ବ୍ୟବଧାନ ଭିତରେ ମାମାଜୀ ପୁଣି ସମ୍ପୂର୍ଣ୍ଣ ସାହେବ ପାଲଟି ଗଲେ । ସେ ମୋ ଆଡକୁ ଏକ ପୁରାପୁରି ଅପରିଚିତ ଲୋକ ଭଳି ଅନାଇ କହିଲେ, "ଆମେରିକାରେ ବର୍ତ୍ତମାନ ଭୀଷଣ ଥଣ୍ଡା ପଡ଼ୁଥିବ ।" ମୁଁ ଜାଣିଲି ଯେ ମାମାଜୀଙ୍କର ଆଜିପାଇଁ ସୁନ୍ଦର ଭାରତୀୟ ସଂଧ୍ୟାର ସମାପ୍ତି ହୋଇଯାଇଛି । ଏଥରକ ଆମେ ଗାଡ଼ିନେଇ ମୋର ଯାଗା ରିଜର୍ଭ କରିଥିବା ହୋଟେଲରେ ନବବର୍ଷର ପ୍ରସ୍ତୁତି ସଂଧ୍ୟା ବିତାଇବାକୁ ଗଲୁ ।

ପୁରୁଣା ବର୍ଷ, ଅନ୍ଧାର ରାସ୍ତାଘାଟ ରାଜପଥ ଦେଇ ଆମେ ଯେତେବେଳେ ହୋଟେଲ ଭିତରକୁ ପଶିଲୁ, ସେତେବେଳକୁ ରାତି ସାଢ଼େ ଏଗାରଟା ବାଜିଥିଲା ଏବଂ ଅଭୂତପୂର୍ବ ସାଜସଜ୍ଜାରେ ସବୁକିଛି ଚକମକ କରୁଥିଲା । ଏ ଯେମିତି ଦାରିଦ୍ର୍ୟର ସମୁଦ୍ର ଭିତରେ ସମୃଦ୍ଧିର ଏକ ଅଦ୍ଭୁତ ଦ୍ୱୀପ । ଏଠାରେ ଅଭାବ ନାହିଁ ଅନାଟନ ନାହିଁ ରୋଗ ନାହିଁ ଦୁର୍ଭିକ୍ଷ ନାହିଁ ଅସହାୟତା ନାହିଁ ନୈରାଶ୍ୟ ନାହିଁ । ମାମାଜୀ କହିଲେ "ପ୍ରତ୍ୟେକ ବିକାଶଶୀଳ ସମାଜରେ ଏପରି ଏକ ଶ୍ରେଷ୍ଠ ଅଂଶ ଅଛି, ଯାହା ଆଚାର ବ୍ୟବହାର ଚାଲିଚଳନରେ ପୃଥିବୀର ଯେ କୌଣସି ଧନବାନ ଦେଶର ସମକକ୍ଷ ।"

ମୋ ମୁଣ୍ଡ ଭିତରେ ବର୍ତ୍ତମାନ ବିଦେଶୀ ପାନୀୟ ସବୁ କାମ କରୁଥିଲା ଏବଂ ମାମାଜୀଙ୍କ କଥା ତା ଭିତରେ ଠିକରେ ପଶିଲା ନାହିଁ । ମାମାଜୀଙ୍କୁ ମୋର ସାଙ୍ଗ ସହିତ ପରିଚୟ କରାଇ ଦେଇ ମୁଁ ନିଜକ ଏଇ ସୁନ୍ଦର ବାତାବରଣର ଆନନ୍ଦମୟ ସ୍ରୋତରେ ଭାସିଯିବାକୁ ଦେଲି । ନାଲି ନୀଳ ନରମ ଆଲୁଅ, ରଙ୍ଗ ବେରଙ୍ଗ ବେଲୁନ, ଫୁଲ ପତ୍ର, ପରଫ୍ୟୁମର ବାସନା, ବିଦେଶୀ ସଂଗୀତର ହାଲୁକା ମାଦକତା, ଏବଂ ନାଚୁଥିବା ଯୁଗ୍ମ ମୂର୍ତ୍ତି ସବୁ ମୋ ମନ ଭିତରେ ଏକ ସମୃଦ୍ଧ ପ୍ରଶାନ୍ତି ଆଣିଦେଲେ । ମୁଁ ଡଉକ ଧାରରେ ବସି ଟେବୁଲ ଉପରେ ମଥା ରଖି ଏଇ ରସ ସବୁକୁ ଆସ୍ୱାଦନ କରୁ କରୁ ସବୁ କିଛି ଭୁଲିଗଲି ଏବଂ ଏକ ଗଭୀର ସ୍ୱପ୍ନ ଆସି ମତେ ଆଚ୍ଛନ୍ନ କରିଦେଲା ।

ମୁଁ ଯେତେବେଳେ ଆଖି ଖୋଲିଲି ଚାରିପାଖ ଅନ୍ଧକାରାଚ୍ଛନ୍ନ ଥିଲା, କିନ୍ତୁ ହଠାତ ଆଲୁଅ ସବୁ ଜଳି ଉଠିଲା ଏବଂ ହାପି ନିଉ ଇଅର ଶବ୍ଦରେ ଚତୁର୍ଦ୍ଦିଗ [illegible] ହୋଇଗଲା । ମୋର ସାଙ୍ଗ ଓ ମାମାଜୀ ମୋ ପାଖରେ ଠିଆ ହୋଇ ମୋର ଦି ହାତ ଧରି ଉଠାଇଲେ ଓ କହିଲେ, "ତମେ ହିଁ ସବୁଠାରୁ ବେଶୀ ଉପଭୋଗ କଲ ଆଜିର ସନ୍ଧ୍ୟା ।" ତା ପରେ ସେମାନେ ଦୁହେଁ ମତେ ବାହାରକୁ ଆସିବାକୁ ସାହାଯ୍ୟ କଲେ । ନରମ ଗାଲିଚା, ମାୟାବୀ ଦର୍ପଣ ଓ ରହସ୍ୟମୟ ଆଲୁଅ ଭିତର ଦେଇ ଆମେ ଆସି ହୋଟେଲ ବାହାରେ ଠିଆ ହେଲୁ । ହୋଟେଲର ବନ୍ଦ ଶୀତତାପ ନିୟନ୍ତ୍ରିତ ବାତାବରଣରୁ ବାହାର ଖୋଲା ଥଣ୍ଡାରେ କିଛି କ୍ଷଣ ଠିଆ ହେବା ପରେ ମୁଁ ମୋର ସମ୍ବିତ ଫେରି ପାଇଲି ଏବଂ ଆମେ ତିନିଜଣ ଯେତେବେଳେ ଗାଡ଼ିରେ ବସିଲୁ, ମୁଁ ସେମାନଙ୍କୁ ନବବର୍ଷର ଶୁଭେଚ୍ଛା ମଧ୍ୟ ଜଣାଇଲି । ମୋର ସାଙ୍ଗ କହିଲା "କନଟ ପ୍ଲେସରେ ଆଇସକ୍ରିମ ଖାଇଲେ ସବୁ ଠିକ୍ ହୋଇଯିବ ।"

ଗାଡ଼ି ଚାଲିବାରୁ ମୋ ମୁହଁରେ ଥଣ୍ଡା ପବନ ବାଜିଲା ଏବଂ ଆମେ ଯେତେବେଳେ କନଟ ସର୍କସର ଗୋଲେଇ ଭିତରେ ପଶିଲୁ, ମୁଁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ ହୋଇଗଲି । ମୁଁ ଘଣ୍ଟା ଦେଖିଲି; ରାତି ସାଢ଼େ ବାରଟା ବାଜିଥିଲା । ଯଦିଓ ସେତେବେଳକୁ ପ୍ରବଳ ଶୀତ ଓ ଥଣ୍ଡା ଥିଲା, ରାସ୍ତାରେ ଅନେକ ମଟର ସାଇକେଲ ଓ ଗାଡ଼ି ଜୋରରେ ହର୍ଣ୍ଣ ଦେଇ ଯିବା ଆସିବା କରୁଥିଲେ ଏବଂ ସେଠାରେ ଅନେକ ଲୋକଙ୍କର ଭିଡ଼ ଥିଲା । ଆମ ଗାଡ଼ି ଆଇସକ୍ରିମ ଦୋକାନ ଆଗରେ ଅଟକିଲା, ଯେଉଁଠାରେ ଆଗରୁ ଅନେକ ଗାଡ଼ି ରହିଥିଲା ଏବଂ ଭୀଷଣ ଗହଳି ଥିଲା । ସମସ୍ତଙ୍କ ହାତରେ ବେଲୁନ ଓ ମୁଣ୍ଡରେ ରଙ୍ଗବେରଙ୍ଗ କାଗଜର ଟୋପି ଥିଲା ଏବଂ ସମସ୍ତେ ରଙ୍ଗୀନ ମିଜାଜରେ ଥିଲେ । ଗାଡ଼ିରୁ ଓହ୍ଲାଇ ମୁଁ ଯେଉଁଠାରେ ଛିଡ଼ା ହେଲି ସେଠାରେ ରାସ୍ତା ପାଖରେ ଚାରି ପାଞ୍ଚ ବର୍ଷର ଗୋଟେ ଝିଅଟିଏ ବସିଥିଲା । ଝିଅଟି

ବର୍ତ୍ତମାନ ମୋଟା ଉଲ୍‌ର କୋଟ ପିନ୍ଧି, ହାତରେ ବେଲୁନ ଧରି ଆଇସକ୍ରିମ ଖାଉ ଖାଉ ଏହି ଆନନ୍ଦ ଉତ୍ସବରେ ଭାଗ ନେବା ଉଚିତ୍ ଥିଲା । କିନ୍ତୁ ସିଏ ଦେହରେ କେବଳ ଗୋଟିଏ ଚିରା ପତଳା ଜାମା ଥିଲା ଓ ରାସ୍ତା କଡ଼ରେ ବସି ସେ ବେଲୁନ ବିକ୍ରି କରୁଥିଲା । ମୁଁ ତା ପାଖରୁ ଅନେକ ବେଲୁନ କିଣି ତା ହାତକୁ ସାମାନ୍ୟ ପଇସା ବଢ଼ାଇ ଦେବାବେଳେ ନିଜକୁ ଆଶ୍ୱାସନା ଦେଲି ଯେ ମୁଁ ମୋର ସାମାଜିକ କର୍ତ୍ତବ୍ୟ ଓ ଦାୟିତ୍ୱ ସମାପନ କରିଦେଇଛି । ତା ପରେ ଆମେ ରଙ୍ଗୀନ କାଗଜର ଟୋପି କିଣି ମୁଣ୍ଡରେ ଲଗାଇ ଭିଡ଼ ଭିତରେ ମିଶିଗଲୁ ।

ଏଥର ମୁଁ ଆନନ୍ଦ ଉଲ୍ଲାସରେ ମାତିଥିବା ଦଳ ଦଳ ଲୋକମାନଙ୍କ ସହିତ ଆଉରି ଗୋଟିଏ ଗୋଷ୍ଠୀକୁ ଲକ୍ଷ୍ୟକଲି । ଏମାନେ ସମସ୍ତେ ଭିଖାରୀ ଥିଲେ ଏବଂ ଆଇସକ୍ରିମ ଖାଉଥିବା ଲୋକମାନଙ୍କୁ ଘେରି ରେଜା ପଇସା ଓ ଉଚ୍ଛିଷ୍ଟ ସଂଗ୍ରହ କରୁଥିଲେ । କେତେକ ଭିଖାରୁଣୀଙ୍କ କାଖରେ ଛୋଟ ପିଲା ଥିଲେ ଏବଂ ଏହି ଅସମ୍ଭବ ଶୀତକୁ ବେଖାତିର କରି ସେମାନେ କାନ୍ଦୁଥିବା ଛୁଆମାନଙ୍କୁ ମାଗି ଆଣିଥିବା ଆଇସକ୍ରିମ ଖୁଆଉଥିଲେ । ଏମାନଙ୍କୁ ଅତିକ୍ରମ କରି ଅନେକ କଷ୍ଟରେ ଆମେ ଆଇସକ୍ରିମ ପାର୍ଲର ଭିତରକୁ ଗଲୁ । ସେଠାରେ ନବବର୍ଷ ଉପଲକ୍ଷେ ବହୁତ ପ୍ରକାର ଆଇସକ୍ରିମର ବିକ୍ରି ଥିଲା । କିନ୍ତୁ ମୋର ବନ୍ଧୁ କହିଲା, "ଏ ଭିଡ଼ ଭିତରେ ମିଳିବ କି ନା ସନ୍ଦେହ । ତମେ ବାହାରକୁ ଯାଅ । ମୁଁ ଯାହା ମିଳିବ ନେଇ ବାହାରକୁ ଆସୁଛି ।

ଆମେ ବାହାରକୁ ଆସିଛୁ କି ନାହିଁ, ଆମ ହାତରେ ଆଇସକ୍ରିମ ଥିବ ବୋଲି ତିନି ଚାରିଜଣ ଭିଖାରୁଣୀ ଆସି ଆମକୁ ଘେରିଗଲେ । କିନ୍ତୁ ଯେତେବେଳେ ଆମ ହାତ ଖାଲି ଦେଖିଲେ, ସେମାନେ କାଳବିଳମ୍ବ ନକରି ଆମକୁ ଛାଡ଼ି ଦେଇ ଅନ୍ୟ ଲୋକମାନଙ୍କ ପାଖକୁ ଚାଲିଗଲେ । କେବଳ ଗୋଟିଏ ଭିକାରୁଣୀ, ଯାହା କାଖରେ ଦୁଇ ତିନି ବର୍ଷର କାନ୍ଦୁଥିବା ଛୁଆଟିଏ ଥିଲା, ଆମ ପାଖରେ ଠିଆ ହୋଇ ରହିଲା ଏବଂ କହିଲା, "ବାବୁ, ଏ ଛୁଆ ଦି'ଦିନ ହେଲା ଖାଇନାହିଁ । ମତେ କିଛି ପଇସା ଦିଅ ।" ଏ ଦୃଶ୍ୟ ଦେଖି ମତେ ପ୍ରକୃତରେ ଦୁଃଖ ଲାଗିଲା ଏବଂ ମୁଁ କହିଲି, "ମାମାଜୀ, ଏ ଦେଶର କଣ ହେବ ?" ମାମାଜୀ ତାଙ୍କର ନିବନ୍ଧ କଥା ଭୁଲି ନଥିଲେ, କହିଲେ, "ପ୍ରକୃତ ପ୍ରଶ୍ନ ହେଉଛି, ଏ ପିଲାଟିର କଣ ହେବ ?" ତା'ପରେ ଆମେ ପୁଣି ଦାରିଦ୍ର୍ୟର ସଙ୍କଟ ବିଷୟରେ ଆଲୋଚନା କରିବାରେ ଲାଗିଲୁ ଏବଂ ସେହି ଭିଖାରୁଣୀ ଓ ତାର ପିଲାଟି କଥା ଭୁଲିଗଲୁ । ସେ କିନ୍ତୁ ଆମ ପାଖରେ ଠିଆ ହୋଇ ଛୁଆ ଦି'ଦିନ ହେଲା ଖାଇନାହିଁ କହି ପଇସା ପାଇଁ ଅଳି କରିବାରେ ଲାଗି ରହିଲା ଏବଂ ଛୁଆ ତାର କାନ୍ଦ ବନ୍ଦ କଲାନାହିଁ ।

ମୋ ସାଙ୍ଗ ବହୁତ କଷ୍ଟରେ ଭିଡ଼ ଭିତରୁ ଦେଇ ଆମ ପାଖକୁ ଆସିଲା ଏବଂ ଆମ ହାତକୁ ଆଇସକ୍ରିମ ବଢ଼ାଇ ଦେଉ ଦେଉ ଭିଖାରୁଣୀକୁ ଗାଳି ଦେଲା । ସେ ପକେଟରୁ ବାହାର କରି ପଇସା ଦେବାକୁ ଯାଉଥିଲା, ମାମାଜୀ ମନା କଲେ, କାରଣ ଏ ବିଷୟରେ ମଧ୍ୟ ତାଙ୍କର ନିର୍ଦ୍ଦିଷ୍ଟ ମତ ଥିଲା । ଏଥରକ ଛୁଆ ସାଙ୍ଗକୁ ଭିଖାରୁଣୀ ମଧ୍ୟ କାନ୍ଦିବାକୁ ଆରମ୍ଭ କଲା । ମାମାଜୀ କହିଲେ, "ବରଂ ଛୁଆକୁ କିଛି ଖାଇବାକୁ ଦିଅ ।"

ଏହି ସମୟରେ ପାଖରେ ଛିଡ଼ା ହୋଇଥିବା ଭଦ୍ର ବ୍ୟକ୍ତିଙ୍କ ଦଳର କାହା ହାତରୁ ଗୋଟିଏ ବେଲୁନ ଉଡ଼ି ଆସି ଆମ ପାଖରେ ପଡ଼ିଲା ଏବଂ ଏହି ଘଟଣାଟି ହଠାତ୍ ଏକ ନୂଆ ଆନନ୍ଦ କଲରୋଳର କାରଣ ହେଲା । ଏ ସବୁ ସହିତ ଆମ ପାଖରେ ଶୀତରେ ଚିରା ଲୁଗା ପିନ୍ଧି କାଖରେ କାନ୍ଦୁଥିବା ଛୁଆକୁ ଜାକି ପଇସା ମାଗୁଥିବା ଭିଖାରୁଣୀର ସ୍ଥିତି ମତେ ବର୍ତ୍ତମାନ ବଡ଼ ଖାପଛଡ଼ା ମନେ ହେଲା । କିଛି ସାହାଯ୍ୟ କରିବା ଓ କିଛି ଶହୀଦ ହେବାର ଭଙ୍ଗୀରେ ମୁଁ ମୋ ହାତରେ ଥିବା ଆଇସକ୍ରିମଟିକୁ ଭିଖାରୁଣୀ ହାତକୁ ବଢ଼ାଇ ଦେଲି ।

ଅତି କୃତଜ୍ଞତାର ସହିତ ଭିଖାରୁଣୀ ମୋ ହାତରୁ ଆଇସକ୍ରିମ ନେଲା ଏବଂ ହୁଏତ ମତେ ସେ ସମାଲୋଚନାତ୍ମକ କିଛି କହିବେ, ଏହି ଭୟରେ ମୁଁ ମାମାଜୀଙ୍କ ଆଡ଼କୁ ଅନାଇଲି । କିନ୍ତୁ ମାମାଜୀ ଓ ମୋର ସାଙ୍ଗ ଦୁହିଁଙ୍କ ଦୃଷ୍ଟି ସେହି ଭିଖାରୁଣୀ ଓ ତାର ଛୁଆ ଉପରେ ଥିଲା । ଆମେ ଦେଖିବାକୁ ରହିଁ ଥିଲୁ କି ପ୍ରକାର ବ୍ୟଗ୍ରତା ଓ ସନ୍ତୋଷର ସହିତ ପିଲାଟି ଆମେ ଦେଇଥିବା ଆଇସକ୍ରିମ ଖାଇବ ।

ଆମ ସାମନାରେ ଦୋକାନମାନଙ୍କର ନିଅନ ଆଲୁଅ, ନବବର୍ଷ ସମାରୋହରେ ତଲ୍ଲୀନ ଲୋକମାନଙ୍କର ଭିଡ଼, ଉଡ଼ୁଥିବା ବେଲୁନର ଗୁଚ୍ଛ, ରଙ୍ଗୀନ କାଗଜର ଟୋପି, ଗାଡ଼ିର ଶବ୍ଦାୟିତ ହର୍ଣ୍ଣ ଓ ରେଡ଼ିଓରେ ଉଚ୍ଚସ୍ୱରର ଗୀତ ବର୍ତ୍ତମାନ ଏକ ବାଦ୍ୟବାଦିତ ଚଳଚ୍ଚିତ୍ର ଭଳି ଥିଲା, ସେଥିରେ ଭିଖାରୁଣୀ ମା ଓ କୋଳରେ କାନ୍ଦୁଥିବା ଛୁଆ ବର୍ତ୍ତମାନ କ୍ଲୋଜ୍ ଅପରେ ଦେଖା ଯାଉଥିଲେ । ସେମାନଙ୍କର ପ୍ରତ୍ୟେକଟି ଗତିବିଧି ନିର୍ଦ୍ଦିଷ୍ଟ କିନ୍ତୁ ଅତି ଧୀର ଓ ସୁନ୍ଦର ଥିଲା । ମା ଅତି ସ୍ନେହରେ ପିଲାଟିର ମୁହଁକୁ କାନ୍ଧ ଉପରୁ ନିଜ ଆଡ଼କୁ ଆଣିଲା ଏବଂ ତା ହାତକୁ ଆଇସକ୍ରିମ ବଢ଼ାଇ ଦେଲା ।

ଛୁଆ କାନ୍ଦ ବନ୍ଦ କଲା; ଆଇସକ୍ରିମକୁ ହାତରୁ ନେଇ ତାକୁ ଅନାଇଲା; ତା ପରେ ତାର ଛୋଟ ହାତକୁ ଝାଙ୍କାଡ଼ି ତାକୁ ତଳକୁ ଫିଙ୍ଗି ଦେଇ କହିଲା, "ମୁଁ ଟୋପି ନେବି ।"

# ସଂପର୍କ

ଲଣ୍ଡନ୍‌ରେ ଏତେ ପ୍ରବଳ ଶୀତ ହେବ ବୋଲି ଜାଣିଥିଲେ ମୁଁ କଦାପି ବିଲାତ ଆସି ନଥାନ୍ତି ଏବଂ ଟିକେଟ୍ ବଦଳରେ ଟେଲିଭିଜନବାଲାଙ୍କ ପାଖରୁ ବରଂ ଟଙ୍କା ନେଇ ନେଇଥାନ୍ତି । ମୁଁ ଭାବିଥିଲି ବିଲାତରେ ଶୀତ ଆମର ସହରଠାରୁ ଶୀତ ଦିନର ଥଣ୍ଡାଠାରୁ କେତେକାଂଶରେ ବେଶି ହୋଇଥିବ । ଏ ଶୀତ କିନ୍ତୁ ଏକ ସମ୍ପୂର୍ଣ୍ଣ ଭିନ୍ନ ରକମର ଶୀତ ଥିଲା ଏବଂ କେବଳ ଦେହର ଚର୍ମମାଂସକୁ ନୁହେଁ, ଅସ୍ଥିମଜ୍ଜାକୁ ଭେଦ-କରି ଆତ୍ମା ଭିତରେ ପଶିଯାଉଥିଲା । ଶୀତ ଯୋଗୁଁ ଘର ଭିତରୁ ବାହାରକୁ ବାହାରିବାକୁ ଇଚ୍ଛା ନ ଥିଲା ଏବଂ ବୁଲାବୁଲି କରିବା ତ ଦୂରର କଥା, ମୁଁ ଭାବୁଥିଲି କେମିତି ଦଶଦିନ ସରିଗଲେ ପୁଣି ଗାଁକୁ ଫେରିଯିବି । ତା ଛଡ଼ା ବବି କହୁଥିଲା ଯେ କିଛିଦିନ ପରେ ଆହୁରି ଶୀତ ଆରମ୍ଭ ହେବ ଏବଂ ଏ କଥା ମଧ୍ୟ ମୋର ଆତଙ୍କର କାରଣ ହୋଇଥିଲା ।

ଶୀତକୁ ମୋର ଭୟ ଆରମ୍ଭ ହୋଇ ଯାଇଥିଲା ଲଣ୍ଡନ୍‌ର ହିଥ୍ରୋ ଏୟାର-ପୋର୍ଟରେ ପାଦ ଦେବା ବେଳୁ । ଏ ମୋର ବିଦେଶ ଯାତ୍ରାର ପ୍ରଥମ ଅଭିଜ୍ଞତା ଥିଲା ଏବଂ ଉଡ଼ାଜାହାଜ ଭିତରକୁ ପଶିବା ବେଳେ ମୋର ଯେଉଁ ଉଲ୍ଲସିତ ଅନୁଭବର ଆରମ୍ଭ ହୋଇଥିଲା, ପ୍ଲେନ୍ ଭିତରେ ଦଶ ଘଣ୍ଟା ବସି ରହିବା ପରେ ସେ ଉତ୍ତେଜନା ବେଶ୍ ମ୍ଳାନ ପଡ଼ିଯାଇଥିଲା । ତା ପରେ ବ୍ରିଟିଶ୍ ଇମିଗ୍ରେସନ୍‌ର ଚକ୍ର ଅନୁଭୂତ ପରେ ଯେତେବେଳେ ଏୟାରପୋର୍ଟ ବାହାରେ ଖୋଲା ପବନରେ ଆସି ଛିଡ଼ା ହେଲି, ବିଲାତର ଶୀତ ମତେ ଅସତର୍କ ଆକ୍ରମଣ କଲା । ବବି, ଯାହାର ନିମନ୍ତ୍ରଣରେ ମୁଁ ଏଠାକୁ ଆସିଥିଲି, ମତେ ବାହାରେ ନେବା ପାଇଁ ଅପେକ୍ଷା କରୁଥିଲା, କିନ୍ତୁ ତା ସହିତ ସାକ୍ଷାତକାର ମୋ ପାଇଁ ବର୍ତ୍ତମାନ ଥିଲା ଆନନ୍ଦର ନୁହେଁ, କେବଳ ସାନ୍ତ୍ୱନାର କାରଣ ।

ବବିର ପ୍ରରୋଚନାରେ ମୁଁ ଯାତ୍ରା ଥରେ ଦି'ଥର ବାହାରକୁ ଯାଇଥିଲି । ତା ପରଠାରୁ ମୁଁ ଶୀତତାପ ନିୟନ୍ତ୍ରିତ ଘର ଭିତରେ ହିଁ ରହୁଥିଲି ଓ କେବଳ ଝରକା

ବାଟେ ବାହାରକୁ ଅନାଇ ଲୋକମାନଙ୍କର ଯିବା ଆସିବାକୁ ଦେଖି ବଲତକୁ ବୁଝିବାକୁ ଚେଷ୍ଟା କରୁଥିଲି । କିନ୍ତୁ ଦିନ ଦଶଟା ପରେ ରାସ୍ତାରେ ଯିବା ଆସିବା କମ୍ଭ ହୋଇ ଯାଉଥିଲି ଏବଂ ଏକା ଏକା ମୁଁ କ'ଣ କରିବି ଠିକ୍ କରି ପାରୁ ନ ଥିଲି । ମୁଁ କୋଠରି ମାନଙ୍କରେ ଥିବା ଜିନିଷ ପତ୍ର ରେଡ଼ିଓ, ଟେଲିଭିଜନ୍, ଓ୍ୱାଶିଂ ମେସିନ୍ ଇତ୍ୟାଦିକୁ ଚିନ୍ନ ଚିନ୍ନ କରି ଦେଖୁଥିଲି ଏବଂ ତା ପରେ ରୋଷାଇ କରିବାରେ ମନ ଦେଉଥିଲି । ସକାଳେ ବ୍ରେକ୍‌ଫାଷ୍ଟ୍ ନାଁରେ ବବ ଯେଉଁ ଅଣ୍ଡା ଜିନିଷ ସବୁ ତିଆରି କରୁଥିଲା; ସେଥିରେ ମୁଁ ସନ୍ତୁଷ୍ଟ ନ ଥିଲି ଏବଂ ଆଁକରୁ ଗୃହ୍ୱଲ ଡାଲି ମସଲା ତେଜପତ୍ର ଇତ୍ୟାଦି ବାହାର କରି ମୁଁ ଭାତ ତରକାରି ରାନ୍ଧୁଥିଲି । ଯଦିଓ ମତେ ରୋଷାଇ ଜଣା ନ ଥିଲା ଏବଂ ତରକାରିରେ ଲୁଣ ଇତ୍ୟାଦିର ଭାଗମାପ ଠିକ୍ ରହୁ ନଥିଲା, ମତେ ଏ ଖାଇବା ବବର ରୋଷାଇ ଅପେକ୍ଷା ଯଥେଷ୍ଟ ଭଲ ଲାଗୁଥିଲା ।

ବବ ପ୍ରାୟ ସାଢ଼େ ପାଞ୍ଚଟା ବେଳକୁ ଘରକୁ ଫେରୁଥିଲା । ମୁଁ ଦିନସାରା ଘର ଭିତରେ ବସି ରହି ବୋର୍ ହେଉଛି ବୋଲି ସେ ଆଉ କୁଆଡ଼େ ବାହାରକୁ ନ ଯାଇ ସମସ୍ତ ସନ୍ଧ୍ୟା ମୋ ସହିତ କଥାବାର୍ତ୍ତା କରି ତଥା ମୋର ଭଲମନ୍ଦ ବୁଝିବାରେ କଟାଇ ଦେଉଥିଲା । ତାର କଥାବାର୍ତ୍ତାର ବିଶେଷ ଭାଗ ଥିଲା ତାର ଏଇ ଘରଟି ବିଷୟରେ ଯେଉଁଟି ସେ ଛ'ମାସ ତଳେ ଭଡ଼ାରେ ନେଇଥିଲା ଏବଂ ଆଉ ତିନିମାସ ପରେ ଯାହା ତାକୁ ଛାଡ଼ିବାକୁ ପଡ଼ିବ । ତା ଆଗରୁ ସେ ଗୋଟିଏ ଅତି ଶ୍ରେଷ୍ଠ ଘରେ ରହୁଥିଲା, ଯେଉଁଟି ଗୋଟିଏ ସଂକୀର୍ଣ୍ଣ ଅଂଚଳରେ ଥିଲା । ବର୍ତ୍ତମାନର ଘରଟି ଯେ କେବଳ ଅତି ପ୍ରଶସ୍ତ ଥିଲା ତା ନୁହେଁ, ଏଇଟି ଗୋଟିଏ ଶ୍ରେଷ୍ଠ କେନାଲ କୂଳରେ ଥିଲା ଏବଂ କେନାଲ ଓ ଘର ଭିତରେ ଶ୍ରେଷ୍ଠ ଲନ୍ ବି ଥିଲା । ବବ ଅନେକ ସମୟରେ ଏଇ ଲନ୍‌ରେ ଯାଇ ବସୁଥିଲା । ବବ ପାଇଁ ଏ ଘରଟିରେ ଆଉ ଯେଉଁ ଏକ ବିଶେଷ ଆକର୍ଷଣ ଥିଲା, ସେଇଟି ଗୋଟିଏ ପିଆନୋ, ଯାହାକୁ ଘରର ମାଲିକ ଘର ସହିତ ଭଡ଼ାରେ ଦେଇଥିଲେ । ପ୍ରତିଦିନ ସକାଳ ସନ୍ଧ୍ୟାରେ ବବ କିଛି ସମୟ ନିଶ୍ଚୟ ପିଆନୋ ବଜାଉ-ଥିଲା ଏବଂ ଏଇ ସମୟ ସବୁ ବହୁତ ଖୁସି ରହୁଥିଲା ।

ବବ ଲାର୍କିନ୍ ସହିତ ମୋର ପରିଚୟ ହୋଇଥିଲା ଯେତେବେଳେ ଲଣ୍ଡନରୁ ଗୋଟିଏ ଟେଲିଭିଜନ ଦଳ ଆମ ଗାଁକୁ ଫିଲ୍ମ କରିବାକୁ ଆସିଲେ । ବବ ଥିଲା ଏଇ ଦଳର ଡାଇରେକ୍ଟର କ୍ୟାମେରାମ୍ୟାନ୍ । ମୁଁ ଏମାନଙ୍କ ସହିତ ସଂପୃକ୍ତ ହୋଇଗଲି, କାରଣ ତାଙ୍କର ଜଣେ ଡାକ୍ତର ଦରକାର ଥିଲା ଏବଂ ଆମ ଗାଁରେ ମୁଁ ଏକମାତ୍ର ଡାକ୍ତର । ସେମାନେ ଫିଲ୍ମ ଉଠାଇବା ପାଇଁ ଆମ ଗାଁରେ ବେଶ୍ କିଛିଦିନ ରହିଲେ ଏବଂ ଏଇ ସମୟରେ ମୋର ବବ ସହିତ ଘନିଷ୍ଠତା ହୋଇଥିଲା । ବବ ତାଙ୍କ ଦଳର ଅନ୍ୟ ଲୋକମାନଙ୍କଠାରୁ ଭିନ୍ନ ପ୍ରକାରର ଥିଲା ଏବଂ ଅତି ଅଳ୍ପ ସମୟରେ ଆମ ଗାଁର

ଲୋକମାନଙ୍କ ସହିତ ମିଶି ଯାଇ ପାରୁଥିଲା । ଆମ ଗାଁର ପିଲା ବୁଢ଼ା ସମସ୍ତେ ବିବି ଉପରେ ନିଜ ନିଜର ଇଂରେଜୀ ଜ୍ଞାନର ପରୀକ୍ଷା କରୁଥିଲେ ଏବଂ ଅତି ଉତ୍ସାହର ସହିତ ବିବି ମଧ୍ୟ ସେମାନଙ୍କ ସହିତ ସହଯୋଗ କରୁଥିଲା ।

ଟେଲିଭିଜନ ଲୋକ ଆମ ଗାଁରେ ପହଞ୍ଚିବା ଦିନରୁ ହିଁ ଆମ ଗାଁର ଲୋକମାନେ ଦୁଇ ଦଳରେ ବିଭକ୍ତ ହୋଇଗଲେ । ଦଳେ ଲୋକ ସେମାନଙ୍କୁ ସମର୍ଥନ କରୁଥିଲେ ଏବଂ ଅନ୍ୟ ଦଳେ କହୁଥିଲେ ଯେ ଏମାନେ ଫିଲ୍ମ କରିବା ନାଁରେ ଆସିଛନ୍ତି, କିନ୍ତୁ ପ୍ରକୃତରେ ଗୁପ୍ତଚର ଏବଂ ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଗାଁ ମୁଣ୍ଡରେ ନଈ ଉପରେ ଯେଉଁ ବନ୍ଧ ଅଛି ତାର ଫଟୋ ଉଠାଇବା । ସମର୍ଥକମାନେ କହୁଥିଲେ ଯେ ଟେଲି-ଭିଜନ ବାଲା ଗୃହମନ୍ତ୍ରଣାଳୟରୁ ଅନୁମତି ନେଇ ଆସିଛନ୍ତି ଏବଂ ଏଇ ନଈ ବନ୍ଧର ଶତ୍ରୁପକ୍ଷ ପାଇଁ କଣ ବା ମହତ୍ତ୍ୱ ଥାଇପାରେ ? ଦୁଇଦଳ ଭିତରେ ଏଭଳି ଯୁକ୍ତିତର୍କ ଲାଗି ରହିଲା ଏବଂ ଟେଲିଭିଜନ ଲୋକ ଆମ ଗାଁରୁ ଚାଲିଯିବା ପରେ ବି ଏ ବାଦାନୁବାଦର ଶେଷ ହେଲା ନାହିଁ ।

ଯେଉଁ ଲୋକଟି ଏ ସବୁ ବାଦବିବାଦରେ ନଥିଲା, କିନ୍ତୁ ଫିଲ୍ମ ଦଳ ଗାଁରେ ଥିବା ପର୍ଯ୍ୟନ୍ତ ତାଙ୍କ ପାଖେ ପାଖେ ରହୁଥିଲା, ସେ ଥିଲା ଧୂନା ମାମୁଁ । ଧୂନା ଲେଖା ଯୋଖାରେ ମୋର ମାମୁଁ ହେଲେ କ'ଣ ହେଲା, ବୟସରେ ମୋ ଠାରୁ ମାତ୍ର ତିନିବର୍ଷ ବଡ଼ । ପିଲାଦିନେ ଆମ ଗାଁ ସ୍କୁଲରେ ସେ ମୋ ଠାରୁ ବର୍ଷେ ଦି ବର୍ଷ ଉପର କ୍ଲାସରେ ପଢୁଥିଲା ଏବଂ ଫେଲ୍ ହୋଇ କିଛିଦିନ ମୋ ସହିତ ପଢିଲା । ପୁଣି କିଛିଦିନ ପରେ ସେ ପଢ଼ା ଛାଡ଼ିଦେଲା ଏବଂ ଗାଁ ଲୋକଙ୍କର ଛୋଟ ଛୋଟ ବୋଲହାକ କାମ କଲା । ତାର ବୁଦ୍ଧି ଟିକିଏ କମ୍ ବୋଲି ସମସ୍ତେ ଜାଣିଥିଲେ ଏବଂ ସେ କେବେ କାହାର ଭଲମନ୍ଦରେ ନ ଥିବାରୁ ତାକୁ ଲୋକେ ବିଶ୍ୱାସ କରୁଥିଲେ । ଧୂନା ମାମୁଁର ସବୁଠାରୁ ବଡ଼ ଗୁଣ ଥିଲା ସେ ସବୁବେଳେ ହସ ଖୁସିରେ ଥିଲା ଏବଂ ତାକୁ ଦୁଃଖିତ ହେବାର କେହି କେବେ ଦେଖି ନଥିଲେ । ତାର ଗୋଟିଏ ଗୋଡ଼ କଟିଯିବା ପରେ ସେ ଆଉ ଦଉଡ଼ାଦଉଡ଼ି କାମ କରି ପାରୁ ନ ଥିଲା, କିନ୍ତୁ ସେ ବର୍ତ୍ତମାନ ଗାଁକୁ ଓ ଗାଁର ଗାଈ, ଗୋରୁ ଛେଳିଙ୍କୁ ଜଗିବାର ଦାୟିତ୍ୱ ନିଜେ ନିଜ ଉପରକୁ ନେଇ ଯାଇଥିଲା ଏବଂ ଏଇ କାମରେ ଦିନସାରା ବ୍ୟସ୍ତ ରହୁଥିଲା ।

ଧୂନା ମାମୁଁର ଗୋଡ଼ କଟିବାର ଅନେକ ଦିନ ହୋଇ ଗଲାଣି । ମୁଁ ସେତେବେଳକୁ ମେଡ଼ିକାଲ କଲେଜରେ ପଢୁଥାଏ । ଦିନେ ଆମ ପ୍ରଫେସରଙ୍କ ସାଙ୍ଗରେ ସର୍ଜିକାଲ ୱାର୍ଡ଼ ଭିତରେ ବୁଲୁଛୁ, ମତେ କିଏ ମୋ ନାଁ ଧରି ଡାକିଲା । ମୁଁ ଖଟମାନଙ୍କ ଆଡ଼କୁ ଅନାଇ ଦେଖିଲି, କିନ୍ତୁ ରୋଗୀମାନଙ୍କ ଭିତରେ ମୋର କେହି

ଚହ୍ଲା ନ ଥିଲେ । ଟିକିଏ ପରେ ମୁଣ୍ଡ ଘୋଡ଼ାଇ ଶୋଇଥିବା ଜଣେ ରୋଗୀ ମୁଣ୍ଡରୁ କମ୍ବଳ ଟିକିଏ ତଳକୁ ଟାଣି ମତେ ଠାରିବାର ଦେଖି ତା ପାଖକୁ ଗଲି । ମୁଁ ଗଲାବେଳକୁ ରୋଗୀ ପୁଣି କମ୍ବଳ ଘୋଡ଼ାଇ ହୋଇପଡ଼ିଲା । କମ୍ବଳ ଟାଣି ଦେଇ ଦେଖିଲି ଯେ ରୋଗୀଟି ଧନା ମାମୁଁ । ସେ ମତେ କହିଲା, "କେମିତି ତତେ ଠକ ଦେଲି !" ଧନା ମାମୁଁର ଗୋଟିଏ ଗୋଡ଼ ଆଣ୍ଠୁ ଉପରକୁ କଟା ହୋଇଥିଲା । ସେ କିନ୍ତୁ ସେଥିପାଇଁ ଆଦୌ ବିବ୍ରତ ନଥିଲା ଏବଂ ମତେ ତାକୁ ସହାନୁଭୂତି ଦେଖାଇବାର ଅବସର ନ ଦେଇ କହିଲା, "ଟ୍ରେନ୍ ଏତେ ସ୍ପିଡ୍‌ରେ ଅଛି ଜାଣିଥିଲେ ଡେଇଁ ନଥାନ୍ତି । କିନ୍ତୁ ସେ ଶଳା ଟି.ଟି.ଆଇ. ବି ମୋ ପଛରେ ଲାଗିଥିଲା, କଷ୍ଟେ ଜେଲ ପଠାଇଥାନ୍ତା । ଯାହା ହେଉ, ଡାହାଣ ଗୋଡ଼ଟା ରହିଗଲା ।"

ଧନା ମାମୁଁର କଟା ଗୋଡ଼କୁ ଦେଖି ମୋର ଦୁଃଖ ହେଲା । ବେଶ୍ ସୁସ୍ଥ ସବଳ କାମ କରିବା ଲୋକ ହଠାତ୍ ଅକର୍ମଣ୍ୟ ହୋଇଯିବ । ବିନା ଟିକେଟରେ ଯାଇ ଧରା ପଡ଼ିଥାନ୍ତା, କିନ୍ତୁ ତଳକୁ ଡେଇଁ ପଡ଼ିବାର କ'ଣ ଦରକାର ଥିଲା ? ଧନା ମାମୁଁ କିନ୍ତୁ ଆଦୌ ଦୁଃଖୀ ଅଥବା ଚିନ୍ତାଶୀଳ ନଥିଲା ଏଥିପାଇଁ । ମତେ କହିଲା, "ଘରେ କାହାକୁ କହିବୁନି । ଘା ଶୁଖି ଆସିଲାଣି, ଆଉ ଦିନେ ଦି' ଦିନରେ ଠିକ୍ ହୋଇଯିବ । କ'ଣ ରବର ଗୋଡ଼ ଲଗାଇବ ନାଁ କଣ ?" ମୁଁ ତାଙ୍କୁ କ'ଣ କହିବାକୁ ଯାଉଚି, ସେ କହିଲା, "ନାଇଁ, ମୁଁ ରବର ଗୋଡ଼ ଫୋଡ଼ ଲଗେଇବିନି । ମତେ ଗୋଟେ ଭଲ ଲାଠି ଆଣି ଦବୁ । ତୁ ଦେଖିନୁ ସେଇ ଯୋଉ ଜାନୁଘଣ୍ଟିଆ ଆମ ଗାଁକୁ ଭିଖ ମାଗିବାକୁ ଆସେ ? କେମିତି ଖଣ୍ଡିଆ ଗୋଡ଼ରେ ଡଗଡ଼ଗ କରି ଚାଲୁଥାଏ ? ତା ସାଙ୍ଗରେ ତମେ ଦଉଡ଼ି ପାରିବ ନାହିଁ ।"

ଧନା ମାମୁଁ ଗାଁକୁ ଫେରିଲା ସେମିତି ତାର କିଛି ହୋଇନାହିଁ ଏବଂ ଅଳ୍ପ କେତେଦିନ ଭିତରେ ଲାଠି ଧରି ପୁଣି ଗାଁ ସାରା ବୁଲାବୁଲି କରି କାର୍ଯ୍ୟବ୍ୟସ୍ତ ହୋଇଗଲା । ଫିଲ୍‌ବାଲା ଗାଁକୁ ଆସିବା ଦିନୁ ତାଙ୍କ ପଛରେ ଲାଗି ରହିଲା ଏବଂ ତାଙ୍କୁ ଯଦିଓ ସେମାନେ କିଛି କାମ ଦେଉନଥିଲେ, ସେ ନିଜ ଆଡ଼ୁ ସେମାନଙ୍କର ଗ୍ରେଟ ଗ୍ରେଟ ବୋଲିହାକ କରୁଥିଲା । ଏତେ ଲୋକଙ୍କ ଭିତରୁ ତାର ବିଶେଷ ବନ୍ଧୁତା ହୋଇଥିଲା ବବ ଲାର୍କିନ ସହିତ । ଧନା ଜାଣିଥିଲା ଯେ ବବି ତାଙ୍କ ଗାଁର ଲୋକଙ୍କ ସହିତ ସବୁଠାରୁ ବେଶି ମିଶିଥିଲା । ଧନା ତାର ସ୍କୁଲ ଦିନର ଜ୍ଞାନ ଦେଇ ଦିନେ ବବକୁ ଡାକିଲା, "ବ୍ରଦର, ବ୍ରଦର—।" ବବ କହିଲା, "ନୋ ବ୍ରଦର । ବବ, ଓନ୍‌ଲି ବବ ।" ଧନା ତାକୁ ନିଜର ନାଁ କହିଲା, କିନ୍ତୁ ବବ ପାଟିରେ ଧନା ପଶିଲା ନାହିଁ । ସେ ଡୂନା, ଡହ୍‌ନା ଇତ୍ୟାଦି ଚେଷ୍ଟା କରିବା ପରେ ଶେଷରେ ମତେ ପଚାରି ତାକୁ ମାମୁନ୍ ବୋଲି ଡାକିବାକୁ ସୁବିଧାଜନକ ମନେ କଲା ।

ଇଉନିଟ୍‌ର ଲୋକ କ୍ୱଚିତ୍ ମୋ ପାଖକୁ ଔଷଧ ନେବାକୁ ଆସୁଥିଲେ, କିନ୍ତୁ ଅନେକ ସମୟରେ ମୁଁ ଯାଇ ତାଙ୍କ ଫିଲ୍ମ ଉଠାଇବା କାମ ଦେଖୁଥିଲି । ଏ ଏକ ବିରକ୍ତିଜନକ ବ୍ୟାପାର ଥିଲା ଏବଂ ମିନିଟ୍ ଦି ମିନିଟ୍ ଶଟ ଉଠାଇବା ପାଇଁ ଘଣ୍ଟା ଘଣ୍ଟାର ପ୍ରସ୍ତୁତିର ଦରକାର ପଡ଼ୁଥିଲା । ଡାଇରେକ୍ଟର ଯାଇ ଲୋକମାନଙ୍କୁ ଠିକ୍‌ଠାକ୍ କରି ବ୍ୟବସ୍ଥା ସବୁ କରିବା ସମୟତକ ବବିକୁ ଅପେକ୍ଷା କରିବାକୁ ପଡ଼ୁଥିଲା । ଏଇ ଅପେକ୍ଷାର ସମୟରେ ବବି ନିଜର ଷ୍ଟିଲ୍ କ୍ୟାମେରା ନେଇ ଗାଁର ବିଭିନ୍ନ ଦୃଶ୍ୟର ଫଟୋ ଉଠାଉ ଥିଲା କିମ୍ବା ଗାଁ ମୁଣ୍ଡ ଗଛତଳେ ବସି ନିର୍ଦ୍ଦେଶକର ଡାକିବାକୁ ଅପେକ୍ଷା କରୁଥିଲା । ନିଜର ସବୁ କାମ ଛାଡ଼ି ଦେଇ ଧୂନା ମାମୁଁ ଯାଇ ବବି ପାଖରେ ବସୁଥିଲା । କିମ୍ବା ତା ପଛରେ ଗ୍ଳେଟାଇ ଗ୍ଳେଟାଇ ଯାଇ ଗାଁର କେଉଁ ଦୃଶ୍ୟମାନ ଫଟୋ ଉଠାଇବାର ଉପଯୁକ୍ତ ସେ କଥା ବିଭିନ୍ନ ମୁଦ୍ରା ଓ ଅଳ୍ପ କିଛି ଇଂରେଜୀ ଶବ୍ଦଦେଇ ସେ ବବିକୁ ବୁଝାଉଥିଲା । ଗାଁର ବୁଲା କୁକୁର, ଗ୍ରାମ ଦେବତାଙ୍କ ମନ୍ଦିର ଆଗରେ ପଡ଼ିଥିବା ଭଙ୍ଗା ଘୋଡ଼ା, ଥୁଣ୍ଟା ଗଛ ଇତ୍ୟାଦିର ଫଟୋ ଉଠାଇ ସାରି ସେମାନେ ପୁଣି ଗଛ ତଳେ ଆସି ବସୁଥିଲେ । ଭାଷାର ପ୍ରତିବନ୍ଧକ ଥିଲେ ମଧ୍ୟ ସେମାନଙ୍କ ଭିତରେ ଭାବର ଆଦାନ ପ୍ରଦାନର ବିଶେଷ ଅସୁବିଧା ହେଉଥିଲା ଭଳି ଜଣା ପଡ଼ୁ ନ ଥିଲା । ଧୂନା ମାମୁଁ ବବିକୁ କ୍ୟାମେରାର ବିଭିନ୍ନ ଅଂଶ ବିଷୟରେ ପଚାରୁଥିଲା ଏବଂ ବବି କ୍ୟାମେରାକୁ ଖୋଲି ଏକାଗ୍ରତା ସହିତ ତାକୁ ଜିନିଷ ସବୁ ଦେଖାଉଥିଲା । ଧୂନା ନିଶ୍ଚୟ କିଛି ନା କିଛି ବୁଝୁଥିଲା, କାରଣ ସେ ବବିର କଥା ଶୁଣି କେତେବେଳେ ହସୁଥିଲା, କେତେବେଳେ ଗମ୍ଭୀର ହୋଇ ଯାଉଥିଲା ଅଥବା କ୍ୟାମେରା ଦେଇ କୌଣସି ଦୂରର ଜିନିଷକୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ଦେଖା ଯାଉଥିଲା ।

ଅନେକ ସମୟରେ ମତେ ବବି ଓ ଧୂନା ମାମୁଁଙ୍କ ମଝିରେ ଦ୍ୱିଭାଷୀର କାମ କରିବାକୁ ପଡ଼ୁଥିଲା । ବବି ମାମୁଁର ପୋଷାକ ବିଷୟରେ ପଚାରିଲେ ମୁଁ ତାକୁ ଗାମୁଛା ଓ ଠେକା କହି ବୁଝାଉଥିଲି, କିନ୍ତୁ ଏଇ ଦୁଇଟି ଶବ୍ଦକୁ ଉଚ୍ଚାରଣ କରିବାକୁ ଚେଷ୍ଟା କରି ବବି ଶେଷରେ ହାରି ମାନୁଥିଲା । ଦିନେ ମତେ ବବି ଧୂନା ମାମୁଁର ଆକ୍ସିଡେଣ୍ଟ କେମିତି ହେଲା ପଚାରିଲା । ମୁଁ ତାକୁ ସବୁ କଥା କହିବା ପରେ ସେ ଯେତେବେଳେ କୃତ୍ରିମ ଗୋଡ଼ ଲଗାଇବା କଥା କହିଲା, ଧୂନା ମାମୁଁ ଯେ କି ଏ ପର୍ଯ୍ୟନ୍ତ ଚୁପ ରହି ଆମର କଥାବାର୍ତ୍ତା ତନ୍ମୟ ହୋଇ ଶୁଣୁଥିଲା, ଅତି ଜୋରରେ ମୁଣ୍ଡ ହଲାଇ ଏ ପ୍ରସ୍ତାବକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରି କହିଲା, "ନୋ ଉଡ୍ ଲେଗ୍, ନୋ ରବର ଲେଗ୍ ।" ମଝିରେ ମଝିରେ ଧୂନା ମାମୁଁ ଗାଁ ଭିତରକୁ ଯାଇ ମୁଢ଼ି ଓ ଚଡ଼ାଭଜା ଆଣୁଥିଲା ଏବଂ ବବି ଓ ସେ ଆରାମରେ ବସି ତାକୁ ଖାଉଥିଲେ । କିମ୍ବା, ଧୂନା ମାମୁଁ ତାକୁ ଠେକା କିପରି ଭିଡ଼ିବାକୁ ହେବ ସେ କଥା ଶିଖାଉଥିଲା ଏବଂ ଅତି

ଇଂଗ୍ଲାଣ୍ଡର ସହିତ ବବି ଏ କଥା ଶିଖିବାକୁ ଚେଷ୍ଟା କରୁଥିଲି । ମଝିରେ ମଝିରେ ସେମାନେ ଗଛ ତଳେ ବସି ଲୁଡୋ ମଧ୍ୟ ଖେଳୁଥିଲେ ।

ଧୂନା ମାମୁଁ କୌତୁହଳ ପ୍ରକୃତିର ଥିଲି ଏବଂ ବବିର ସବୁ ଜିନିଷପତ୍ର ବିଷୟରେ ଜାଣିବାକୁ ଆଗ୍ରହ କରୁଥିଲି । ଅନେକ ସମୟରେ ବବିର ଅନୁମତିର ଅପେକ୍ଷା ନ କରି ସେ ତାର ବ୍ୟାଗ୍ ଭିତରୁ ଜିନିଷ ସବୁ ବାହାର କରି ତାକୁ ଭିନ୍ନ ଭିନ୍ନ କରି ପରୀକ୍ଷା କରୁଥିଲି, ଯଦିଓ ସେ ଜଟିଳ ଧରଣର ଯନ୍ତ୍ରପାତିର କିଛି ବୁଝୁ ନ ଥିଲି । ଏ ଜିନିଷ ଭିତରୁ ସେ ଯେଉଁ ଗ୍ରେଟ ଜିନିଷଟିକୁ ବୁଝୁଥିଲି ସେଇଟି ଗୋଟାଏ ଲେଭେଲ ଥିଲି, ଯାହା ସାହାଯ୍ୟରେ କ୍ୟାମେରାକୁ ସମତଳ ରଖି ହେବ । ଧୂନାମାମୁଁ ଏ ଜିନିଷଟିର ପ୍ରୟୋଜନ କଥା ଜାଣି ପାରିଥିଲି ଏବଂ ଏଇଟି ଯେ ଆମ ଗାଁରେ କୋଠା କାମ କରୁଥିବା ରାଜମିସ୍ତ୍ରୀର ଲେଭେଲର ଏକ ଉନ୍ନତ ସଂସ୍କରଣ ,ସେ କଥା ବୁଝୁଥିଲି । ଏଇଟିକୁ ନେଇ ଧୂନାମାମୁଁ ଅନେକ ସମୟ ନଜର ପାପୁଲି ଉପରେ ରଖି ତାକୁ ଅନାଇ ରହୁଥିଲି । କେବେ କେବେ ସେ ନଜର ଠେକା ଖୋଲି ଦେଇ ବବିର ଟୋପିକୁ ମୁଣ୍ଡରେ ଦେଇ ବସୁଥିଲି କିମ୍ବା ବବିର ଗ୍ଲୋଭକୁ ପିନ୍ଧି ହାତରେ ଲଠି ଧରି ଚାଲିଲେ ହାତକୁ ବେଶି ଆରାମ ମିଳିବ କି ନାହିଁ ପରୀକ୍ଷା କରୁଥିଲି । ଇଉନିଟର ଅନ୍ୟ ଅନ୍ୟ ଲୋକମାନେ ସେମାନଙ୍କର ଜିନିଷ ପତ୍ରକୁ ସାମାନ୍ୟ ଛୁଇଁଲେ ବିରକ୍ତ ହେଉଥିଲେ, କିନ୍ତୁ ବବି ଧୂନାମାମୁଁର କୌତୁହଳର ଆତିଶଯ୍ୟକୁ ଆନନ୍ଦରେ ଗ୍ରହଣ କରୁଥିଲି । ଏପରିକି ଯୋଉଦିନ ଧୂନାମାମୁଁ ହାତରୁ ଖସିପଡ଼ି ତାର ଗ୍ରେଟ କ୍ୟାମେରା ଅଚଳ ହୋଇଗଲି, ବବି ସାମାନ୍ୟ ବିଚଳିତ ହୋଇ ନ ଥିଲା ।

ଟେଲିଭିଜନ ବାଲା ଆମ ଗାଁରେ ପୂରା ପନ୍ଦର ଦିନ ରହିଲେ । ଏମାନଙ୍କର ଅବସ୍ଥିତି ଆମ ଗାଁ ଲୋକଙ୍କ ଭିତରେ ବେଶ୍ ମନୋମାଳିନ୍ୟ ଓ ବିଦ୍ୱେଷ ସୃଷ୍ଟି କରିଥିଲା । କିଛି ଲୋକ ଭାବୁଥିଲେ ଯେ ଆମେ କେତେଜଣ ଲୋକ, ଯେ କି ଇଉନିଟ ସହିତ ଥିଲୁ, ଏଇ ପନ୍ଦର ଦିନ ଭିତରେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିଛୁ ଏବଂ ଏକଥା ବିଶେଷ ଈର୍ଷାର କାରଣ ଥିଲା । ଘଟଣା ଶେଷରେ ଚରମ ସୀମାରେ ପହଞ୍ଚିଲା ଯୋଉଦିନ ସୁଟିଙ୍ଗ ବେଳେ ରାସ୍ତା ଧାରରେ ଯାଉ ଯାଉ ଗୋଟିଏ ଗାଈ ତଳକୁ ଖସି ପଡ଼ି ତାର ଗୋଡ଼ ଭାଙ୍ଗି ଗଲା।ଗାଁ ବାଲା ପୁଲିସ୍ ଡାକି ଆଣିଲେ, ଗାଁରେ ବହୁତ ପାଟିତୁଣ୍ଡ ହେଲା, ଟେଲିଭିଜନ ବାଲା ପୁଲିସ୍କୁ କଲେକ୍ଟରଙ୍କ ଚିଠି ଦେଖାଇ ଧମକାଇଲେ ଇତ୍ୟାଦି । ଏତେ ଗଣ୍ଡଗୋଳ ଭିତରେ କେବଳ ଦୁଇଟି ଲୋକ ଆଦୌ ବ୍ୟସ୍ତ ନ ଥିଲେ । ଧୂନାମାମୁଁ ଓ ବବି ଗାଁ ମୁଣ୍ଡ ଗଛ ତଳେ ବସି ଏଇ ଘଣ୍ଟାକର ଉତ୍ତେଜନାପୂର୍ଣ୍ଣ ସମୟ ଲୁଡୋ ଖେଳି କଟାଇ

ଦେଲେ । ଯେଉଁଦିନ ଇଉନିଟ୍‌ର ଲୋକମାନେ ଗାଁରୁ ବିଦାୟ ନେଇଗଲେ, ଆମେମାନେ ଗାଁ ମୁଣ୍ଡରେ ଠିଆହୋଇଗଲୁ, କିନ୍ତୁ ଧୂନାମାମୁଁ ସେମାନଙ୍କ ଗାଡ଼ିରେ ବସି ସେମାନଙ୍କ ସହିତ ଅନେକ ଦୂର ଯାଇଥିଲା ।

ସେ ଦିନ ବବ ଶୀଘ୍ର ଅଫିସରୁ ଫେରି ଆସିଲା ବୋଲି ମୁଁ ଖୁସି ହେଲି କାରଣ ଏକା ଏକା ବସି ରହି ମୁଁ ବିରକ୍ତ ହୋଇ ଯାଉଥିଲି । ବବ ଯେତେବେଳେ କହିଲା ଯେ ସେ କିଛିଦିନ ପାଇଁ ଛୁଟି ନେଉଛି, ମୁଁ ଆହୁରି ଖୁସି ହେଲି । ତାର ଛୁଟି ନେବାର ପ୍ରଧାନ କାରଣ ଥିଲା ସେ ଏଇ ଘର ଭଡ଼ାର ଯେଉଁ କିଛିଦିନ ବାକିଥିଲା, ସେ ସମସ୍ତତକ ବବ ଏଇ ଖୋଲା ଘର, କେନାଲ କୂଳର ୱିଲୋ ଏବଂ ପିଆନୋ ବଜାଇବାକୁ ସଂପୂର୍ଣ୍ଣ ଉପଭୋଗ କରିବ । ଏ ଯେମିତି ତାର ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଲକ୍ଷ୍ୟ ଥିଲା ଏବଂ ଏତିକି ପାଇଲେ ତାର ଜୀବନ ସଫଳ ହୋଇଯିବ । ମୋ ସହିତ ଅଳ୍ପ କଥାବାର୍ତ୍ତା କରି ସେ ସିଧା ପିଆନୋ ପାଖକୁ ଯାଇ ତାର ପୁରୁଣା ସଂଗୀତ ବହି ସବୁ ବାହାର କରି ପିଆନୋ ବଜାଇବାରେ ଲାଗିଲା । ମୁଁ ଏ ସଂଗୀତ ବୁଝିପାରୁ ନଥିଲେ ବି ବବର ଉତ୍ସାହ ଓ ଆନନ୍ଦ ଦେଖି ଖୁବ୍ ଖୁସି ହେଉଥିଲି ।

ଲଣ୍ଡନକୁ ଆସି ମୁଁ ଭାବିଥିଲି ଯେ ବବ ମତେ ମାମୁନ ବିଷୟରେ ଅନେକ କିଛି ପଚାରିବ । କିନ୍ତୁ ବବ ଥରେ ମାତ୍ର ତା କଥା ପଚାରିଥିଲା । ଆଉ ଥରେ ମୁଁ ତାକୁ ଧୂନା ମାମୁଁ ବିଷୟରେ କହିବା ବେଳେ ତାକୁ ବିଶେଷ ଆଗ୍ରହ ହେବାର ଦେଖିଲି ନାହିଁ । ତେଣୁ ମୁଁ ଭାବିଲି ଯେ ଆମ ଗାଁରେ ଥିଲାବେଳେ ସେମାନଙ୍କର ଅଦ୍ଭୁତ ସମ୍ପର୍କ ଏକ ସାମାନ୍ୟ ସାମୟିକ ଜିନିଷ ଥିଲା । ଦୁହିଁଙ୍କ ଭିତରେ କୌଣସି ସାମଞ୍ଜସ୍ୟ ନ ଥିଲା କିମ୍ବା କୌଣସି ସାଧାରଣ ରୁଚି ବା ପ୍ରବୃତ୍ତିର ସମ୍ଭାବନା ମଧ୍ୟ ନ ଥିଲା । ତେବେ ମୋର ମଝିରେ ମଝିରେ ମନେ ହଉଥିଲା ଯେମିତି ବବ ଓ ଧୂନା ମାମୁଁଙ୍କର କିଛି ଏକା ଭଳି ଗୁଣ ଅଛି । କିନ୍ତୁ ମୁଁ କଳନା କରିପାରୁ ନଥିଲି ଏ ଜିନିଷଟା ଠିକ୍ କଣ ।

ଯାହା ହେଉ ମୋର ଲଣ୍ଡନ ଛାଡ଼ିବାର ସମୟ ବି ଆସିଗଲା । ବବ ଛୁଟିରେ ଥିବାରୁ କହିଲା ଯେ ମତେ ନିଜେ ନେଇ ଏୟାରପୋର୍ଟରେ ପହଞ୍ଚାଇ ଦେବ । ମୋର ଫ୍ଲାଇଟ୍ ଦିନ ଦଶଟା ବେଳେ ଥିଲା ଏବଂ ପୂର୍ବଦିନ ରାତିରେ ମୋର ଜିନିଷପତ୍ର ସଜାଡ଼ି ମୁଁ ସହଲ ସହଲ ଶୋଇବାକୁ ଗଲି । ତଥାପି ରାତିରେ ନିଦ ହେଲା ନାହିଁ । ମୁଁ ସକାଳେ ଶୀଘ୍ର ଉଠିବି ବୋଲି ଠିକ୍ କରିଥିଲି, କିନ୍ତୁ ଏଇ ସକାଳ ପହରରେ ହିଁ ମତେ ନିଦ ଆସିଗଲା ଏବଂ ନିଦ ଭାଙ୍ଗିଲା ସାତଟା ବେଳେ । ବାହାରେ ସେତେବେଳକୁ କୁହୁଡ଼ି ଯୋଗୁ ସାମାନ୍ୟ ଅନ୍ଧାର ଥିଲା । ମୁଁ କବାଟ ଖୋଲି ବାହାରୁ ଦୁଧ ବୋତଲ

ଆଣିଲି ଏବଂ ମୋ ପାଇଁ ଚା ତିଆରି କଲି । ଏହି ସମୟରେ ପାଖ କୋଠରୀରେ ପିଆନୋ ବାଜିବାର ସ୍ୱର ଶୁଭିଲା । ମୁଁ ଆଶ୍ଚର୍ଯ୍ୟ ହେଲି, କାରଣ ବବ ବେଶ୍ ଡେରିରେ ନିଦରୁ ଉଠିଥିଲା । ମୁଁ ଆଉ କପେ ଚା ତିଆରି କଲି ଏବଂ ତାକୁ ନେଇ ଆର କୋଠରୀକୁ ଗଲି ।

କୋଠରୀରେ ଆଲୁଅ ଜଳୁ ନ ଥିଲା ଏବଂ ସେତେବେଳକୁ ସକାଳର ଆଲୁଅ ବି ଠିକ୍‌ରେ ଆସି ନ ଥିଲା । ଏହି ସାମାନ୍ୟ ଆଲୁଅରେ ଷ୍ଟୁଲ୍ ଉପରେ ବସି ବବ ତନ୍ମୟତାର ସହିତ ପିଆନୋ ବଜାଉଥିଲା । ସେ ଗୋଟିଏ ଗାମୁଛା ପିନ୍ଧିଥିଲା ଏବଂ ମୁଣ୍ଡରେ ଠେକା ଭିଡ଼ିଥିଲା । ସେ ଯଦିଓ ତାର ସେହି ପୁରୁଣା ସଂଗୀତ ବହିରୁ ପାଶ୍ଚାତ୍ୟ ସଂଗୀତର ଧୂନ ବଜାଉଥିଲା, ମୋର ମନେ ହେଲା ଏ ଯେମିତି ଧୂନା ମାମୁଁ ପାଇଁ ଉତ୍ସର୍ଗୀକୃତ ବବର ଏକ ସ୍ୱତନ୍ତ୍ର ସଂଗୀତ ଥିଲା ।

କିଛି ସମୟ ପରେ ପିଆନୋ ବଜାଇବା ବନ୍ଦ କରି ଆସି ମୋ ହାତରୁ ଚା କପ ନେଲା । ମୁଁ ସେତେବେଳକୁ ଯିବା ପାଇଁ ପ୍ରସ୍ତୁତ ହୋଇ ପୋଷାକ ପିନ୍ଧି ସାରିଥିଲି । ବବ କାନ୍ଥ ଘଣ୍ଟାକୁ ଚାହିଁଲା ଏବଂ କହିଲା, "ଆହୁରି ସମୟ ଅଛି" । ତା ତା ପରେ ଚା'ରୁ ଟିକିଏ ପିଇ କହିଲା, "ବର୍ତ୍ତମାନ ତମର ସେଠାରେ ଦିନ ଗୋଟାଏ ହୋଇଥିବ ।"

ମୁଁ ଘରକୁ ଫେରିଯିବାକୁ ବ୍ୟାକୁଳ ହେଉଥିଲି ଏବଂ ତାର କଥା ମତେ ଆମର ଗାଁକୁ ସ୍ମରଣ କରାଇ ଦେଲା । ଏତେବେଳକୁ ସେଠାରେ ଦିନ ଗୋଟାଏ ହୋଇଥିବ । ଗାଁ ଦାଣ୍ଡରେ ବେଶ୍ ଖରା ପଡ଼ୁଥିବ । ମନ୍ଦିର ପାଖ ଶୂନଶାନ ହୋଇଯାଇଥିବ । ନଈ କୂଳରେ ଗାଈ ଚରୁଥିବେ । ଗାଁ ମୁଣ୍ଡ ବରଗଛ ତଳେ ସୁନ୍ଦର ଛାଇ ପଡ଼ିଥିବ । ସେଠାରେ ଧୂନା ମାମୁଁ ଏକା ବସିଥିବ । ତାର ମୁଣ୍ଡରେ ଟୋପି ଓ ହାତରେ ଗ୍ଲଭ ଥିବ ଏବଂ ଦିଗବଳୟ ଆଡ଼କୁ ଚାହିଁ ସେ ମନେ ମନେ କ'ଣ ସବୁ ଭାବୁଥିବ ।

# ସଂସାର

ଯେତେବେଳେ ତାକୁ ଉପେକ୍ଷା କରି ତାର ତଳ କର୍ମଚାରୀ ପ୍ରମୋଶନ ପାଇଗଲା, ସତ୍ୟବ୍ରତ ଲକ୍ଷ୍ୟ କଲା ଯେ ତାଙ୍କୁ ତାଙ୍କ ଅଫିସ୍‌ର ସମସ୍ତେ ସେଇଦିନଠାରୁ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲେ । ଏ ପର୍ଯ୍ୟନ୍ତ ଭଲ କର୍ମଚାରୀ ବୋଲି ତାର ସୁନାମ ଥିଲା, ଅଫିସ୍‌ରେ ତାର ଅନେକ ବନ୍ଧୁ ଥିଲେ ଏବଂ ସେ ନିଜର କାମ ବେଶ୍ ଖୁସିର ସହିତ କରୁଥିଲା । କିନ୍ତୁ ତାର ପଦୋନ୍ନତି ନ ହେବା ଦିନଠାରୁ, ତାର ମନେ ହେଲା, ତାର ବନ୍ଧୁମାନେ ଆସ୍ତେ ଆସ୍ତେ ଦୂରେଇ ଗଲେ, ତାର ଭଲ କର୍ମଚାରୀ ହୋଇଥିବାର ସୁନାମ ହଠାତ୍ ଶେଷ ହୋଇଗଲା ଏବଂ ତାର ଆଉ କାମରେ ମନ ଲାଗିଲା ନାହିଁ । ଠିକ୍ ଏଇ ସମୟରେ ତାର ଆଣ୍ଠୁଧରା ବେମାର ମଧ୍ୟ ଆରମ୍ଭ ହୋଇଗଲା । ଏତେ ଦିନ ଧରି ଚଳପ୍ରଚଳ କରୁଥିବା ଏଇ ଅଫିସ୍‌ର ସମ୍ପୂର୍ଣ୍ଣ ସଂସାରରୁ ସେ ହଠାତ୍ ନିଜକୁ ନିର୍ବାସିତ ବୋଧ କଲା ଏବଂ ଅଫିସ୍ କାମ ଅପେକ୍ଷା ନିଜର ଆଣ୍ଠୁର ଚିକିତ୍ସା କରାଇବାକୁ ଅଧିକ ଗୁରୁତର ମନେକଲା ।

ସତ୍ୟବ୍ରତ ପାଇଁ ଏକଥା ଥିଲା ଏକ ନୂଆ ଅଭିଜ୍ଞତା । ବାଇଶି ବର୍ଷର ଚାକିରି ଭିତରେ କେବେ ହେଲେ ଛୁଟି ନେଇ ନଥିବା କଥାକୁ ସେ ଗର୍ବର ସହିତ ସମସ୍ତଙ୍କୁ କହୁଥିଲା ଏବଂ ତାର ଅଫିସ୍ ଖୋଲିବା ଆଗରୁ ଆସି ଛୁଟିର ଅନେକ ସମୟ ପରେ ଅଫିସ୍ ଛାଡ଼ିବା କଥା ସମସ୍ତଙ୍କୁ ଜଣାଥିଲା । ଏହାର କାରଣ ଏକଥା ନୁହେଁ ଯେ ସେ ଏତେ କାମ ଭିତରେ କେବେ ହେଲେ ବେମାର ପଡ଼ି ନଥିଲା । କିନ୍ତୁ ଶାରୀରିକ ରୋଗ ଓ ଯନ୍ତ୍ରଣାମାନଙ୍କ ସହିତ ଅଫିସ୍ କାମର କିଭଳି ସମନ୍ୱୟ ରଖି ହେବ, ସେ କଥାକୁ ସତ୍ୟବ୍ରତ ଏକ ସୂକ୍ଷ୍ମ କଳାରେ ପରିଣତ କରି ଦେଇଥିଲା । ଦିଟି ଥାକ ଫାଇଲ୍ ମଝିରେ ବୋତଲ ରଖି ସେ ଔଷଧ ଖାଇବାର ନିୟମିତତାକୁ ବଜାୟ ରଖୁଥିଲା ଏବଂ ନିଜର ମୁଣ୍ଡବ୍ୟଥାକୁ ଯଥା ସମ୍ଭବ ଖାଇବା ଛୁଟି ଆଡ଼କୁ ଘୁଞ୍ଚାଇ ଦେଉଥିଲା । ଗୋଡ଼ ହାତର ଯନ୍ତ୍ରଣାକୁ ଲାଘବ କରିବା ପାଇଁ ସେ କେବେ କେବେ ନିଜର ଚଉକି ପାଖକୁ ଅନ୍ୟ ଟେବୁଲ୍ ଓ ଷ୍ଟୁଲ୍ ଟାଣି ତା ଉପରେ ଭରା ଦେଉଥିଲା, କିନ୍ତୁ ଏକଥା ପ୍ରତି ନଜର ରଖୁଥିଲା ଯେପରି ସେ ନିଜର ଫାଇଲ୍‌ମାନଙ୍କଠାରୁ ଦୂରେଇ ଯିବ ନାହିଁ ।

ବର୍ତ୍ତମାନ କିନ୍ତୁ ସତ୍ୟବ୍ରତକୁ ଫାଇଲ୍ ସବୁ ଏତେ ବେଶି ପ୍ରିୟ ଜଣାଗଲେ ନାହିଁ ଏବଂ ସେ ଯେଉଁଦିନ ପ୍ରଥମ ଥର ପାଇଁ ଛୁଟି ନେଲା, ନିଜକୁ ଅପରାଧୀ ମନେ କଲା ନାହିଁ । ଛୁଟିରେ ଘରେ ବସି ରହିବା ଏକ ଅଦ୍ଭୁତ ଅନୁଭବ ଥିଲା ଏବଂ ସେ ବସି ବସି ସାରାଦିନ ଅଫିସରେ ସେଇ ସମୟମାନଙ୍କରେ କଣ କଣ ହେଉଥିବ ସେ କଥା ଭାବି ଦିନଟି କଟାଇ ଦେଲା । ଗୋଟିଏ ସମୟରେ ତାର ଇଚ୍ଛା ହେଲା ଯେ ସେ ନିଜର ଅସୁସ୍ଥତା ସତ୍ତ୍ୱେ ଅଫିସ୍‌ରେ ଯାଇ ଥରେ ବୁଲି ଆସିବ । କିନ୍ତୁ ଏଇ ସମୟରେ ସେ ତାକୁ ପ୍ରମୋଶନରୁ ବଂଚିତ କରିଥିବା ଅଫିସର୍‌ଙ୍କର ମୁହଁକୁ ମନେ ପକାଇ ନିଜକୁ ଏ ଚିନ୍ତାରୁ ନିବୃତ୍ତ କଲା ।

ସତ୍ୟବ୍ରତ ନିଜକୁ ଅଫିସ୍‌ର ଏକ ଅପରିହାର୍ଯ୍ୟ ଅଙ୍ଗ ବୋଲି ମନେ କରୁଥିଲା ଏବଂ ଭାବୁଥିଲା ଯେ ତା ବିନା ଅନେକ ମହତ୍ତ୍ୱପୂର୍ଣ୍ଣ କାମ ସବୁ ଅଟକି ହୋଇଯିବ । ଛୁଟିର ଦ୍ୱିତୀୟ ଦିନ ସେ ଅପେକ୍ଷା କରି ରହିଲା ଯେ ଅଫିସ୍‌ର ଲୋକ ଆସି ବିଭିନ୍ନ ଫାଇଲମାନଙ୍କ ବିଷୟରେ ତାର ସ୍ୱତନ୍ତ୍ର ମତାମତ ନେବେ । କିନ୍ତୁ ଯେତେବେଳେ କେହି ଆସିଲେ ନାହିଁ, ସେ ନିଜେ ଫୋନ୍ କରି କହିଲା, "ସେଇ ଜରୁରୀ ଫାଇଲ୍‌ଟା ମୋର ଟେବୁଲ୍‌ର ବାଁ ପାଖ ଥାକରେ ଅଛି ।" ଅଫିସ୍‌ର ଲୋକ ବିସ୍ମିତ ହେବା ତ ଦୂରର କଥା, ତାକୁ ଓଲଟା ଜବାବ ଦେଲା, "ଓ, ସେଇ ସିଭିଲ୍ ସୁଟ୍ ଫାଇଲ୍ ତ ? ବଡ଼ ସାହେବ କାଲିଠାରୁ ସେଥିରେ ଫାଇନାଲ୍ ଅର୍ଡର ଦେଇ ସାରିଲେଣି ।" ତାର ଟୀକା ଟିପ୍ପଣୀ ବିନା ଏତେ ବଡ଼ ଗୁରୁତ୍ୱପୂର୍ଣ୍ଣ ଫାଇଲ୍ ଯେ ଏତେ ସହଜରେ ମୀମାଂସିତ ହୋଇଯିବ, ଏ କଥା ସତ୍ୟବ୍ରତ ପାଇଁ ଥିଲା ଏକ ଗୁରୁତର ଆଘାତ । ସେ ମନେ ମନେ ଭାବିଲା, ଏଇ ଫାଇଲ୍ ନେଇ କୋର୍ଟରୁ ବଡ଼ ସାହେବଙ୍କୁ ପ୍ରତିକୂଳ ମନ୍ତବ୍ୟ ମିଳନ୍ତା କି !

ତିନି ଦିନ ଛୁଟି ପରେ ବି ତାର ଅଣ୍ଟୁ ଠିକ୍ ହେଲା ନାହିଁ ଏବଂ ଘରକୁ ମଧ୍ୟ ସେ ଆଦରି ନେଇ ପାରିଲା ନାହିଁ । ଏତେ ବର୍ଷର ବିବାହିତ ଜୀବନ ଭିତରେ ତାର ସ୍ତ୍ରୀ ମଧ୍ୟ ଦିନ ବେଳ ପାଇଁ ତାର ନିଜର ନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ଘଣ୍ଟ ଠିକ୍ କରି ନେଇଥିଲା, ଯେଉଁଥିରେ ସତ୍ୟବ୍ରତର ଅପ୍ରତ୍ୟାଶିତ ଯୋଗଦାନ ବ୍ୟାଘାତ ସୃଷ୍ଟି କରୁଥିଲା । ଏକଥା ଦୁହିଁଙ୍କ ଭିତରେ ମନୋମାଳିନ୍ୟର କାରଣ ହେଲା ଏବଂ ସତ୍ୟବ୍ରତ ଏଇ ଅନାତ୍ମୀୟ ଘର ସଂସାରକୁ ଛାଡ଼ି ପରଦିନ ଅଫିସରେ ଯୋଗଦେବ ବୋଲି ଠିକ୍ କଲା ।

ଏଇ ତିନିଦିନ ଭିତରେ ସତ୍ୟବ୍ରତ ଯେ ଭାବିଥିଲା ଅଫିସ୍‌ରେ ଅନେକ କିଛି ଅବ୍ୟବସ୍ଥା ହୋଇ ଯାଇଥିବ, ପ୍ରକୃତ ପକ୍ଷରେ କିଛି ବି ହୋଇ ନ ଥିଲା ଏବଂ ସବୁ

ଜିନିଷ ଯେ ଯାହା ସ୍ଥାନରେ ନିର୍ଦ୍ଧାରିତ ଓ ସୁରକ୍ଷିତ ଥିଲା । କେବଳ ସତ୍ୟବ୍ରତର ନିଜ ଟେବୁଲ ଉପରର ଫାଇଲ୍ ସବୁ ଇତଃସ୍ତତ ପଡ଼ିଥିଲା, ଯାହା ଅନ୍ୟ ସମୟରେ ତା ପାଇଁ ଅତ୍ୟନ୍ତ କ୍ଷୋଭର କାରଣ ହୋଇଥାନ୍ତା । କିନ୍ତୁ ସେ ଲକ୍ଷ୍ୟ କଲା ଯେ ସେ ତାର ଫାଇଲ୍‌ରେ ଅନ୍ୟମାନଙ୍କ ଅଯଥା ହସ୍ତକ୍ଷେପ ବିଷୟରେ ବର୍ତ୍ତମାନ ନିତାନ୍ତ ଉଦାସୀନ ଥିଲା ଏବଂ ଏ କଥା ନେଇ ସେ କାହା ସହିତ ତର୍କ ବିତର୍କ କଲା ନାହିଁ । ବରଂ ନିଜ ଚଉକିରେ ବସି ସେ ଚୁପ୍‌ଚାପ୍ ନିଜର କାମରେ ଯଥାସମ୍ଭବ ମନୋନିବେଶ କଲା ।

ଏଇ ଅଫିସ୍‌ର ଚାରିଆଡ଼କୁ ଅନାଇ ସତ୍ୟବ୍ରତ ଏହା ସହିତ ତାର ଏତେ ବର୍ଷର ସଂପର୍କକୁ ମନେ ପକାଇଲା । ନିଜର ଘର ଅପେକ୍ଷା ସେ ଜୀବନର ବେଶୀ ସମୟ କଟାଇଥିଲା ଏଇ ଅଫିସ୍ ଘରେ । ନିଜର ପରିବାର ଓ ବନ୍ଧୁମାନଙ୍କ ଅପେକ୍ଷା ଏଠାର ଅଫିସର, କିରାଣୀ ଓ ଅନ୍ୟ କର୍ମଚାରୀମାନଙ୍କ ସହିତ ତାର ବେଶି ସଂପର୍କ ଥିଲା । ଏଇ ଅଫିସ୍‌ଟି ସତ୍ୟବ୍ରତ ପାଇଁ ଏକ ବୃହତ୍ତର ପରିବାର ଥିଲା ଏବଂ ଏଇ ପରିବାରର ସମସ୍ତ ସଭ୍ୟମାନଙ୍କ ସହିତ—ସେ ବନ୍ଧୁଭାବର ହେଉ ବା ଶତ୍ରୁତାର ହେଉ—ତାର ଘନିଷ୍ଠତା ଥିଲା । ଅଫିସ୍ କାମକୁ ସେ ନିଜର ବ୍ୟକ୍ତିଗତ କାମ ମନେ କରୁଥିଲା ଏବଂ ତାର ମତ ଓ ପରାମର୍ଶର ପ୍ରତ୍ୟାଖ୍ୟାନକୁ ସେ ସହଜ ଦୃଷ୍ଟିରେ ଦେଖୁ ନ ଥିଲା । ଅଫିସ୍‌ର ଟେବୁଲ୍, ଚଉକି ଫାଇଲ୍, ଆଲମାରି ଧୂଳି ପୁରୁଣା କାଗଜ ଗଦା ବୁଢ଼ିଆଣୀ ଜାଲ ଫଟା କାନ୍ଥ ମଇଳା ଗ୍ଲାସ ଭଙ୍ଗା ସୁରାଇ ଇତ୍ୟାଦି ସହିତ ତାର ଯେପରି ଆଜନ୍ମ ସମ୍ବନ୍ଧ ଥିଲା ଏବଂ ମାତ୍ର ତିନି ଦିନର ଅନୁପସ୍ଥିତିର ବ୍ୟବଧାନରେ ଏ ସବୁ ସହିତ ତାର ଆବେଗପୂର୍ଣ୍ଣ ସଂପର୍କମାନ କଟିଯିବା ତାକୁ ଖାପଛଡ଼ା ମନେ ହେଲା । କିନ୍ତୁ ଯେତେ ଚେଷ୍ଟା କଲେ ବି ସତ୍ୟବ୍ରତ ଆଉ ଏଇ ଅଫିସ୍‌ଟିକୁ ନିଜର ଆପଣାର ମନେ କରି ପାରିଲା ନାହିଁ ଏବଂ ମନକୁ ମନ କହିଲା, "ଅଫିସ୍ ବାହାରେ ବି ଆଉରି ଏକ ବିରାଟ ସଂସାର ରହିଛି । ଅଫିସ୍ ପାଇଁ ମୁଁ ଏତେ ଚିନ୍ତା କରିବି କାହିଁକି ?"

ସେଦିନ ଅଫିସ୍ ଛୁଟି ପରେ ବାହାରକୁ ଆସି ସେ ଅଫିସ୍ ବାହାରର ସଂସାରକୁ ପ୍ରଥମ ଥର ପାଇଁ ଭଲ ଭାବେ ଅନାଇ ଦେଖିଲା । ସେ ଏକ ସମ୍ପୂର୍ଣ୍ଣ ନୂଆ ପରିବେଶ ଥିଲା । ଏ ପୃଥିବୀଟି ଗୋଟିଏ ଅନନ୍ତ ଅନ୍ତରୀକ୍ଷ ଥିଲା, ଯେଉଁଥିରେ ଅନେକ ନଭମଣ୍ଡଳ ଓ ଗ୍ରହ ନକ୍ଷତ୍ର ଥିଲେ । ଏ ପୃଥିବୀର ଲୋକମାନେ ନିଜ ନିଜର ବାୟୁମଣ୍ଡଳ ଓ ମାଧ୍ୟାକର୍ଷଣକୁ ନେଇ ଗ୍ରହମାନଙ୍କ ଭଳି ନିଜ ନିଜର କକ୍ଷ ଭିତରେ ଗତିଶୀଳ ଥିଲେ । ଏଇ ଭିଡ଼ ଭିତରେ ସତ୍ୟବ୍ରତ ନିଜକୁ ଏକ ଅନଧିକାର ଲଙ୍ଘନକାରୀ ମନେ କଲା ଏବଂ ପରିଚିତ ମୁହଁ ଖୋଜିବାବେଳେ ଅଜ୍ଞାତ ଲୋକମାନଙ୍କ

ପାଖରୁ ଫେରି ପାଇଲା କେବଳ ଉଦାସୀନ ପ୍ରତିକ୍ରିୟା । ଏଥିପାଇଁ ଅଫିସ୍ ଭିତର ଏବଂ ବାହାରର ପୃଥିବୀ ମଧ୍ୟ ତାକୁ ଅନାତ୍ମୀୟ ଜଣାଗଲା ।

ତା ଆରଦିନ ସକାଳେ ତାର ଆଣ୍ଠୁର ବ୍ୟଥା ଆହୁରି ବେଶି ଦୁଃଖଦାୟକ ଜଣାଗଲା ଏବଂ ସେ ଡାକ୍ତରଙ୍କ ପାଖକୁ ଗଲା । ଆଣ୍ଠୁକୁ ହାତୁଡ଼ିରେ ପିଟି, ହାତରେ ମକଚି ଓ ଆଙ୍ଗୁଠିରେ ଚିମୁଟି ଡାକ୍ତର ତାକୁ ଗୋଟିଏ ଔଷଧ ଲେଖିଦେଲେ ଏବଂ ମତ ଦେଲେ, "ସବୁ ଠିକ୍ ହୋଇଯିବ, କିନ୍ତୁ ବେଶ୍ କିଛି ଦିନ ଲାଗିବ । ଏଥିପାଇଁ ଦୁଇ ସପ୍ତାହ ଫିଜିଓଥେରାପି କରିବାକୁ ପଡ଼ିବ ।" ଡାକ୍ତରଙ୍କ ପାଖରୁ ଯାଇ ଫିଜିଓ-ଥେରାପି କ୍ଲିନିକ୍‌ରେ କଥାବାର୍ତ୍ତା କରି ସତ୍ୟବ୍ରତ ଠିକ୍ କଲା ଯେ ପରଦିନଠାରୁ ଅଫିସ୍ ଯିବା ଆଗରୁ ସେ ଗୋଟିଏ ଘଣ୍ଟା ସେଠାରେ ଚିକିତ୍ସା ପାଇଁ ଯିବ । ସେଦିନ ଅଫିସ୍ ସମୟ ଭିତରେ ସେ ନିଜେ ଯାଇ ଔଷଧ ଦୋକାନରୁ ଔଷଧ କିଣିଲା ଏବଂ ଠିକ୍ ପାଞ୍ଚଟାବେଳେ ଅଫିସ୍ ଛାଡ଼ିଲା । ଅଫିସ୍‌ରେ ଔଷଧ ଖାଇବାବେଳେ ତାର ଜଣେ ସହକର୍ମୀ ତାକୁ ତାର ଦେହ ବିଷୟରେ ପଚାରିଲେ । ଅନ୍ୟ ସମୟରେ ସେ ତାର ଆଣ୍ଠୁ ବେମାରିର ଉତ୍ପତ୍ତି, ବୃଦ୍ଧି ଓ ପରିଣତି ବିଷୟରେ ତାଙ୍କୁ ସବିସ୍ତାର ବିବରଣୀ ଦେଇଥାନ୍ତା, କିନ୍ତୁ ଆଜି କେବଳ କହିଲା, "ନା, ସେ କିଛି ନୁହେଁ ।"

ପରଦିନ ସକାଳ ନ'ଟାବେଳେ ସେ ଯାଇ ଫିଜିଓଥେରାପି କ୍ଲିନିକ୍‌ରେ ପହଞ୍ଚି ତା ଭିତରେ ଯେଉଁ ଦୃଶ୍ୟ ଦେଖିଲା, ସେ ମଧ୍ୟ ଗୋଟିଏ ନୂଆ ପୃଥିବୀ ଥିଲା । କବାଟ ପାଖରେ ଗୋଟିଏ ଟେବୁଲ ପାଖରେ ବୁଢ଼ା ଲୋକଟିଏ ଦୁଇଟି ଥାଳି ସାମନାରେ ବସିଥିଲା ଏବଂ ଗୋଟିଏ ଥାଳିରୁ କାଚ ଗୋଲି ସବୁ ନେଇ ଅନ୍ୟ ଥାଳିରେ ରଖୁଥିଲା । ଏକଥା ବୁଢ଼ା ପାଇଁ ଅତ୍ୟନ୍ତ କଷ୍ଟସାଧ୍ୟ ମନେ ହେଉଥିଲା, କାରଣ ପ୍ରତିଟି କାଚ ଗୋଲି ଉଠାଇବା ପାଇଁ ବୁଢ଼ାକୁ ଅନେକ ପ୍ରକାର ପ୍ରଚେଷ୍ଟା କରିବାକୁ ପଡ଼ୁଥିଲା । ପାଖରେ ପିଲାଟିଏ ବସି ଗୋଟିଏ ସ୍ପ୍ରିଙ୍ଗ୍‌କୁ ହାତ ମୁଠାରେ ବନ୍ଦ କରୁଥିଲା ଓ ଖୋଲୁଥିଲା । କାନ୍ଥ ପାଖରେ କିଛି ଲୋକ ଚଉକି ଉପରେ ବସି ଥିଲେ ଏବଂ ତାଙ୍କର ମୁଣ୍ଡ ସବୁ ଛାତରୁ ଝୁଲୁଥିବା ଶିକା ଭଳି ଜିନିଷମାନଙ୍କରେ ଟଙ୍ଗା ହୋଇ ରହିଥିଲା । କିଛି ଲୋକ ଖଟ ଉପରେ ଶୋଇଥିଲେ ଏବଂ ସେମାନଙ୍କ ଦେହରେ ବିଜୁଳିରେ ଗରମ ହେଉଥିବା ତକିଆ ଲଗା ଯାଇଥିଲା । ଗୋଟିଏ କଣରେ ଯୁବକଟିଏ ଗୋଟିଏ ସ୍ଥିର ସାଇକେଲ ଉପରେ ବସି ସାଇକେଲ ଚଲାଉଥିଲା ଏବଂ ଅନ୍ୟ କଣରେ ବୁଢ଼ାଟିଏ କାନ୍ଥରେ ଲଗିଥିବା ଗୋଟିଏ ବଡ଼ ଚକକୁ ଘୂରାଉଥିଲା ।

ଏସବୁ କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ନଜର ରଖି କୋଠରୀର ଏକ ରଣ-କୌଶଳପୂର୍ଣ୍ଣ ସ୍ଥାନରେ ବସିଥିବା ଫିଜିଓଥେରାପିଷ୍ଟ ଡାକ୍ତରଣୀ ତାକୁ ଦେଖିଲେ ଏବଂ

ସତ୍ୟବ୍ରତ ଯାଇ ତାଙ୍କ ହାତରେ ପ୍ରେସ୍କ୍ରିପସନଟି ଦେଲା । ଡାକ୍ତରାଣୀ ତାକୁ ଗୋଟିଏ ଚଉକି ଉପରେ ବସାଇ ତାର ଆଣ୍ଠୁକୁ ବିଭିନ୍ନ ଭାବରେ ପରୀକ୍ଷା କଲେ ଏବଂ ତାର ଗୋଡ଼କୁ ଅନ୍ୟ ଗୋଟିଏ ଚଉକି ଉପରେ ରଖି ତାର ତଳ ଉପର ତକିଆ ଲଗାଇ ଦେଲେ, ଯେଉଁଥିରୁ ତାର ଯାଇ ଡାଏଥର୍ମି ମେସିନରେ ଲଗି ତାକୁ ଗରମ କରୁଥିଲା । ଏଇଭଳି ଚଉକିରେ ବନ୍ଧା ହୋଇ ସତ୍ୟବ୍ରତ ଏଥରକ କୋଠରୀର ଚତୁଃପାର୍ଶ୍ୱକୁ ଆଖି ବୁଲାଇଲା । ଏ ଗୋଟିଏ ଯୁଦ୍ଧ ଭୂମି ଥିଲା ଯାହାର ସେନାଧକ୍ଷ ଥିଲେ ଡାକ୍ତରାଣୀ । ସେ ଏକା ସମୟରେ ନିଜ ବାହିନୀର ସମସ୍ତ ଯୋଦ୍ଧାମାନଙ୍କ ଉପରେ ଦୃଷ୍ଟି ରଖୁଥିଲେ ଏବଂ ମଝିରେ ମଝିରେ ଯନ୍ତ୍ରପାତି ଓ ଅସ୍ତ୍ରଶସ୍ତ୍ରର ସଠିକ୍ ଉପଯୋଗ ପାଇଁ ସେମାନଙ୍କୁ ତାଗିଦ୍ କରୁଥିଲେ । କେତେବେଳେ ସେ ସାଇକେଲ ଚଲାଉଥିବା ଲୋକ ପାଖକୁ ଯାଇ ତାକୁ କହୁଥିଲେ, 'ଆହୁରି ଜୋରରେ ଚଲାଅ । ଏଇ ମିଟରରେ ଯେମିତି ତିରିଶି କିଲୋ-ମିଟରରୁ ଅଧିକ ଦେଖାଯିବ । ଆଜି ତମକୁ ତିରିଶି କିଲୋମିଟର ଚଲାଇବାକୁ ପଡ଼ିବ ।' କମ୍ବା ବୁଢ଼ା ଆଡ଼କୁ ନ ଅନାଇ ସେଇ ଚକଟିର ବୁଲିବାର ଶବ୍ଦମାନଙ୍କୁ ଶୁଣି କହୁ-ଥିଲେ, 'ଏତେ ଧୀରେ ନୁହେଁ ; ଆଉ ଟିକିଏ ଜୋର୍‌ରେ ।' କେତେବେଳେ କୌଣସି ରୋଗୀ ତକିଆ ବେଶି ଗରମ ହୋଇଗଲା ବୋଲି ପାଟି କରୁଥିଲା ଓ ଡାକ୍ତରାଣୀ ଯାଇ ତାର ସୁଇଚ୍‌କୁ କମ୍ କରି ଦେଉଥିଲେ । ପିଲାଟି ସ୍ପ୍ରିଙ୍ଗ୍‌ଟି ନେଇ ତାଙ୍କ ଆଗରେ ଠିଆ ହୋଇ କହୁଥିଲା, 'ଆଜି ଶହେଥର କଲି ।' ଡାକ୍ତରାଣୀ ତାକୁ କହୁଥିଲେ, 'ସାବାସ୍ !' କାଲିଠାରୁ ଶହେ କୋଡ଼ିଏ ଥର ।'

ଗରମ ତକିଆ ଭିତରେ ଆଣ୍ଠୁ ପନ୍ଦର ମିନିଟ ରହି ସାରିବା ପରେ ଡାକ୍ତରାଣୀ ତାକୁ ବାହାର କରିଦେଇ ସତ୍ୟବ୍ରତକୁ ବସ ଉଠ ଇତ୍ୟାଦିର ବ୍ୟାୟାମ ଶିଖାଇଲେ । ତାପରେ ତାକୁ ସେଇ ସାଇକେଲ ଉପରେ ବସି ତାକୁ ତିରିଶି କିଲୋମିଟର ବେଗରେ ଚଲାଇବାକୁ ହେଲା, ଯଦିଓ ତାକୁ ଗୋଟିଏ ଯାଗାରେ ଛିଡ଼ା ହୋଇଥିବା ଏବଂ କିନା କୁଆଡ଼େ ଯାଉଥିବା ଏଇ ସାଇକେଲଟି ଅତ୍ୟନ୍ତ ହାସ୍ୟକର ମନେ ହେଉଥିଲା । ଏସବୁ ସରିବା ପରେ ସେ ଯେତେବେଳେ ଯାଇ ଅଫିସ୍‌ରେ ପହଞ୍ଚିଲା, ଘଣ୍ଟାଏ ଡେରି ହୋଇ ସାରିଥିଲା । ସତ୍ୟବ୍ରତ କିନ୍ତୁ ଏହି ବିଳମ୍ବ ପାଇଁ ଆଦୌ ଅନୁତପ୍ତ ନ ଥିଲା । ନିଷ୍ଠୁର ଭାବରେ ଫାଇଲକୁ ଖୋଲୁ ଖୋଲୁ ସେ ଆଣ୍ଠୁକୁ ଛୁଇଁ ଦେଖିଲା ଯେ ଦରଜର କୌଣସି ଉପଶମ ହୋଇ ନ ଥିଲା ।

କ୍ଲିନିକ୍‌ରେ ତାର ପରବର୍ତ୍ତୀ ବୈଠକମାନ ମଧ୍ୟ ତା ପାଇଁ ପ୍ରଥମ ଦିନର ପୁନରାବୃତ୍ତି ଥିଲା । ତେବେ ଏଥରକ ସେ ଏଇ ସମୟରେ ଆସୁଥିବା ବିଭିନ୍ନ ରୋଗୀ-ମାନଙ୍କ ସହିତ ପରିଚିତ ହେବାକୁ ଚେଷ୍ଟା କଲା । କାଚ ଗୋଲକୁ ସଜାଉଥିବା ବୁଢ଼ା ଯେତେବେଳେ ତା ଆଡ଼କୁ ଅନାଇଲା, ସତ୍ୟବ୍ରତ ତାକୁ ଚାହିଁ ସାମାନ୍ୟ ହସିଲା ଏବଂ ଖଟରେ ଶୋଇଥିବା ରୋଗୀ ଯେତେବେଳେ ତକିଆ ବେଶି ଗରମ ହୋଇଗଲା ବୋଲି

ପାଟି କଲା, ସେ ହାତ ବଢ଼ାଇ ଡାଏଥର୍ମି ମେସିନ୍‌ର ସୁଇଚ୍‌କୁ କମାଇ ଦେଲା । ସତ୍ୟବ୍ରତ ଏକଥା ମଧ୍ୟ ଲକ୍ଷ୍ୟ କଲା ଯେ ଏଇ ରୋଗୀମାନଙ୍କର ନିଜ ନିଜ ଭିତରେ ଏକ ଅଦ୍ଭୁତ ଧରଣର ସୌହାର୍ଦ୍ଦ୍ୟ ଥିଲା । ଡାକ୍ତରାଣୀ ସେ କୋଠରୀରୁ ଅଳ୍ପ ସମୟ ପାଇଁ ବାହାରିଗଲେ ସେମାନେ ଡାକ୍ତରାଣୀଙ୍କର କଠୋର ମିଜାଜ ବିଷୟରେ ଆଲୋଚନା କରୁଥିଲେ ଏବଂ ତାଙ୍କୁ ହେଡ୍‌ମିଷ୍ଟ୍ରେସ୍ ବୋଲି କହୁଥିଲେ । ଚକ ଭୁଲଉଥିବା ଚନ୍ଦାମୁଣ୍ଡ ବୁଢ଼ା, ଯେ କି ଅତି ଗମ୍ଭୀର ସ୍ୱଭାବର ଦେଖା ଯାଉଥିଲା, ସେ ମଧ୍ୟ ଏଇ ଲଘୁ ଆଲୋଚନାମାନଙ୍କରେ ସକ୍ରିୟ ଭାବେ ଯୋଗ ଦେଉଥିଲା ଏବଂ କହୁଥିଲା, "ଏଇଟା କ୍ଲିନିକ୍ ନୁହେଁ, ଗୋଟାଏ ମଧ୍ୟଯୁଗୀୟ ଟର୍ଚ୍ଚର୍ ଚେମ୍ବର୍ ।"

ସତ୍ୟବ୍ରତର ଆଣ୍ଠୁର ବ୍ୟଥାର ଉପଶମ ହେଲା ନାହିଁ ଏବଂ ଅଫିସ୍ ଆଗରୁ ଫିଜିଓଥେରାପି ପାଇଁ ଯିବା ତା ପାଇଁ ଏକ ରୁଟିନ୍‌ରେ ପରିଣତ ହୋଇଗଲା । ସେ ଲକ୍ଷ୍ୟ କଲା ଯେ ଅଫିସ୍‌ରେ ବସି କାମ କରିବା, ଯାହା ତା ପାଇଁ ସବୁଠାରୁ ପ୍ରିୟ ଜିନିଷ ଥିଲା, ତା ଅପେକ୍ଷା ବର୍ତ୍ତମାନ ସେ ତାର ସକାଳର ଚିକିତ୍ସା ସମୟକୁ ବେଶି ଉପଭୋଗ କରୁଥିଲା । ଅଫିସ୍‌ରେ ବସି କେମିତି ସେ ପରଦିନ ସକାଳେ କ୍ଲିନିକ୍‌କୁ ଯିବ, ସେ କଥା ଭାବୁଥିଲା । ଏଥରକ ସେ ଅଫିସ୍‌ର ବିଭିନ୍ନ କାର୍ଯ୍ୟକଳାପରେ ବିଶେଷ ଭାଗ ନେଉ ନ ଥିଲା । ଏପରିକି ଦିନେ ଅଫିସ୍ ସମୟ ପରେ ଜଣେ ସହକର୍ମୀ ବଦଳିରେ ଚାଲି ଯାଉଥିବାରୁ ଯେଉଁ ବିଦାୟ ସଭା ହୋଇଥିଲା, ସେ ସେଥିରେ ମଧ୍ୟ ଯୋଗ ଦେଲା ନାହିଁ, ଯଦିଓ ପୂର୍ବରୁ ସେ ହିଁ ଏଇ ସଭାର ଆୟୋଜନର ମୁଖ୍ୟ ହୋଇଥାନ୍ତା ।

କ୍ଲିନିକ୍‌ରେ ଯଦିଓ ସମସ୍ତେ ପରସ୍ପର ସହିତ ସୌଜନ୍ୟ ବିନିମୟ କରୁଥିଲେ ଏବଂ ଡାକ୍ତରାଣୀଙ୍କର ଅନୁପସ୍ଥିତିରେ ଉଚ୍ଚ ସ୍ୱରରେ ଦାୟିତ୍ୱହୀନ କଥାବାର୍ତ୍ତା କରୁଥିଲେ, କେହି କାହା ବିଷୟରେ ବିଶେଷ କିଛି ଜାଣି ନ ଥିଲେ ମନେ ହେଉଥିଲା । ଏପରିକି ସତ୍ୟବ୍ରତକୁ ସେମାନଙ୍କ ଭିତରୁ କାହାରି ନାଁ ମଧ୍ୟ ଜଣା ନ ଥିଲା । ତେବେ ନିଜର ସୁବିଧା ପାଇଁ ସତ୍ୟବ୍ରତ ସେମାନଙ୍କୁ ମନେ ମନେ ବିଭିନ୍ନ ନାଁରେ ନାମିତ କରିଥିଲା, ଯଥା ଚନ୍ଦାମାମା, ଲମ୍ବା ନାକ ଇତ୍ୟାଦି । କେବଳ ସବୁଠାରୁ ବୁଢ଼ା ଲୋକଟି, ଯାହାକୁ ଡାକ୍ତରାଣୀ ବାବୁଜୀ ବୋଲି ଡାକୁଥିଲେ, ସମସ୍ତଙ୍କ ପାଖରେ ବାବୁଜୀ ବୋଲି ପରିଚିତ ଥିଲେ । ବର୍ତ୍ତମାନ ସତ୍ୟବ୍ରତ ମଧ୍ୟ ସେମାନଙ୍କର କଥାବାର୍ତ୍ତାରେ ଯୋଗ ଦେବାକୁ ଆରମ୍ଭ କରିଥିଲା ଏବଂ ମଝିରେ ମଝିରେ ଚନ୍ଦାମାମାକୁ ତାର ବେକ ଓ ଲମ୍ବା ନାକକୁ ତାର ଅଣ୍ଟା ବିଷୟରେ କୁଶଳ ଜିଜ୍ଞାସା କରୁଥିଲା ।

ଆଣ୍ଠୁରେ ଗରମ ତକିଆ ବନ୍ଧା ଅବସ୍ଥାରେ ବସି ରହି ସତ୍ୟବ୍ରତ ଅନେକ ସମୟରେ ନିଜ ଅଫିସ୍ କଥା ଭାବୁଥିଲା । ସେ ଅଫିସର ଯେଉଁମାନଙ୍କୁ ଭଲ ପାଉ

ନ ଥିଲି, ସେମାନଙ୍କୁ କ୍ଲିନିକ୍‌ର ବିଭିନ୍ନ ଯନ୍ତ୍ରରେ ବନ୍ଧା ହୋଇ ରହିଥିବାର କଳ୍ପନା କରୁଥିଲି । ବଡ଼ ସାହେବଙ୍କୁ ସେ ସାଇକେଲ ଉପରେ ବସି କୋଡ଼ିଏ କିଲୋମିଟରରୁ ବେଶି ବେଗରେ ଚଳାଇବାକୁ ଅସମର୍ଥ ଦେଖୁଥିଲି, ତଥା ତାର ସହକର୍ମୀଙ୍କୁ ସେ ଖଟ ଉପରେ ଶୁଆଇ ତକିଆ ବାନ୍ଧି ଦେଇ ସେ ତାର ସ୍ଥିଂଗରୁ ସବୁଠାରୁ ଗରମ କରିଦେବାର ସୁଖ ସ୍ୱପ୍ନ ଦେଖୁଥିଲି । ସତ୍ୟବ୍ରତଙ୍କୁ କ୍ଲିନିକ୍‌ରେ ଏକଥା ସବୁଠାରୁ ଭଲ ଲାଗୁଥିଲା ଯେ ଏଠାରେ କୌଣସି ସାମାଜିକ ଉଚ୍ଚନୀଚ ଭେଦଭାବ ନ ଥିଲା । ଏଠାରେ ଦୈହିକ ଯନ୍ତ୍ରଣାର ମାତ୍ରା ହିଁ ମାନଦଣ୍ଡ ଥିଲା । ଲମ୍ବା ନାକ, ଯେଉଁ ଡ୍ରାଇଭର ଝକଝକ ବଡ଼ ବିଦେଶୀ ଗାଡ଼ିରେ ଆସୁଥିଲା, ସେ ହିଁ ସବୁଠାରୁ ଅଧିକ କଷ୍ଟରେ ଥିଲା ଏବଂ ତାକୁ ସମସ୍ତେ ସହାନୁଭୂତି ଦେଖାଉଥିଲେ । ଅଫିସ୍‌ର ତଳ ଉପର ସ୍ତର ହୋଇଥିବା ବ୍ୟବସ୍ଥାଠାରୁ କ୍ଲିନିକ୍‌ର ସାମ୍ୟବାଦୀ ସ୍ଥିତି ସତ୍ୟବ୍ରତଙ୍କୁ ଅଧିକ ପ୍ରିୟ ମନେ ହେଉଥିଲା । ଏଠାରେ ସଫଳତାର ପ୍ରମାଣ ଥିଲା ସାଇକେଲକୁ ତିରିଶ କିଲୋମିଟର ଗତିରେ ଚଳାଇବା, ତକିଆର ସବୁଠାରୁ ବେଶି ଗରମ ଅବସ୍ଥାକୁ ଅବିଚଳିତ ଭାବରେ ସହିବା ଅଥବା ପନ୍ଦର ମିନିଟ୍ ଭିତରେ କାଚ ଗୋଲି ସବୁକୁ ଗୋଟିଏ ଥାଳିରୁ ଅନ୍ୟ ଗୋଟିଏ ଥାଳିକୁ ସ୍ଥାନାନ୍ତରିତ କରିବା । ଏଠାରେ ସୁଖର ସଙ୍କେତ ଥିଲା ଠିଆ ହେବା ବେଳେ ମୁଣ୍ଡ ନ ବୁଲାଇବା ଏବଂ ହାତକୁ ଅନାୟାସରେ ମୁଣ୍ଡ ଉପରକୁ ଉଠାଇବା ।

ଯଦିଓ ବେଶ୍ କିଛିଦିନ ପରେ ବି ତାର ବ୍ୟାଧିରେ କୌଣସି ପରିବର୍ତ୍ତନ ହୋଇ ନ ଥିଲା, ସତ୍ୟବ୍ରତ କ୍ଲିନିକ୍‌ରେ ପ୍ରତିଦିନ କଟାଉଥିବା ଘଣ୍ଟାଏ ସମୟକୁ ଆଗ୍ରହର ସହିତ ଅପେକ୍ଷା କରି ରହୁଥିଲି । ସେ ସମସ୍ତଙ୍କ ସହିତ ମୋଟାମୋଟି ପରିଚିତ ହୋଇ ସାରିଥିଲି ଏବଂ ବର୍ତ୍ତମାନ ସମସ୍ତଙ୍କ ସହିତ ବ୍ୟକ୍ତିଗତ ସ୍ତରରେ କଥାବାର୍ତ୍ତା କରି ପାରୁଥିଲି । ଅନ୍ୟମାନଙ୍କ ଦେହର ସମସ୍ୟା ସହିତ ସେ ସେମାନଙ୍କର ପାରିବାରିକ ଜୀବନ ବିଷୟରେ ମଧ୍ୟ ସାମାନ୍ୟ ଖବର ରଖିଥିଲି ଏବଂ ଯୋଉ ଭଦ୍ରବ୍ୟକ୍ତି ଚିକିତ୍ସା ସମୟରେ ବହି ପଢ଼ିବାକୁ ଭଲ ପାଉଥିଲେ, ତାଙ୍କ ସହିତ ବହି ବିନିମୟ ମଧ୍ୟ କରି ସାରିଥିଲି ।

ମାସକ ପରେ ସତ୍ୟବ୍ରତ ପୁଣି ଡ଼ାକ୍ତରଙ୍କ ପାଖକୁ ତାର ଅଣ୍ଟୁ ଦେଖାଇବାକୁ ଗଲା । ଯଦିଓ ସେ ନିଜେ କୌଣସି ଅଗ୍ରଗତି ଅନୁଭବ କରି ପାରୁ ନ ଥିଲା, ତାକୁ ବସ ଉଠ କରାଇ, ଚଲାଇ ଏବଂ ଗୋଟିଏ ଗୋଡ଼ରେ ଛିଡ଼ା କରାଇ ଡ଼ାକ୍ତର କହିଲେ ଯେ ସେ ଆଗ ଅପେକ୍ଷା ଭଲ ଅଛି । ବିଭିନ୍ନ ଭାବରେ ପ୍ରଶ୍ନ କରି ସେ ତାକୁ 'ଅନେକ ପରିମାଣରେ ଭଲ ହୋଇ ଯାଇଛି' ବୋଲି କହିବାକୁ ମଧ୍ୟ ବାଧ୍ୟ କରାଇଲେ । କିନ୍ତୁ

ସତ୍ୟବ୍ରତ ପୁଣି ଯେତେବେଳେ ଡ଼ାକ୍ତରଙ୍କୁ ତାର ବ୍ୟଥା କଥା କହିଲା, ଡାକ୍ତର ରୁଷ୍ଟ ହୋଇ ତାକୁ କହିଲେ, "ଏ ବୟସରେ ଆଣ୍ଠୁ ର ଆଉ ଉନ୍ନତି ସମ୍ଭବ ନୁହେଁ । ଯୁବକ ହୋଇଥିଲେ ପୂରା ଭଲ ହୋଇ ଯାଇଥାନ୍ତା । ବର୍ତ୍ତମାନ ଏଇଭଳି ଆଣ୍ଠୁ କୁ ନେଇ ଚଲିବାକୁ ହେବ । ତେବେ ତା ସହିତ ଫିଜିଓଥେରାପି ବି ଚାଲିଥାଉ ।" ସତ୍ୟବ୍ରତ ସାମାନ୍ୟ ବିରକ୍ତିର ସହିତ ଉଠି ଠିଆ ହେଲା । ଆଣ୍ଠୁ ର ଅସହଯୋଗକୁ ଅବଜ୍ଞା କରି ସେ ଲମ୍ବା ଲମ୍ବା ପାଦ ପକାଇ ଡାକ୍ତରଙ୍କ କୋଠରୀ ବାହାରକୁ ଆସିଲା ଏବଂ ସେଠାରୁ ସିଧା କ୍ଲବକୁ ଗଲା । ଏଥରକ ତାର ଆଉ ଆଣ୍ଠୁ ର ପୀଡ଼ାକୁ ଭୟ ନ ଥିଲା, କାରଣ ବର୍ତ୍ତମାନ ସେ ମନ ଭିତରେ ଏଇ ଶାରୀରିକ ସମସ୍ୟା ସହିତ ସନ୍ଧି କରି ନେଇଥିଲା । ସେ ଜାଣିଥିଲା ଯେ ତାକୁ ବର୍ତ୍ତମାନ ଅନ୍ୟ ଗୋଟିଏ ସଂସାରରେ ଅନ୍ୟ ଗୋଟିଏ ପ୍ରକାରରେ ଜୀବନ କାଟିବାକୁ ପଡ଼ିବ ।

ସାଇକେଲ୍ ଉପରେ ବସି ପେଡାଲ କରୁ କରୁ ସତ୍ୟବ୍ରତ ଲକ୍ଷ୍ୟ କଲା ସେ ଚକମାନଙ୍କୁ ତିରିଶ କିଲୋମିଟରର ଗତିରେ ବୁଲାଇ ପାରୁଛି । ସେ ଏ କଥାରେ ବିଶେଷ ଗର୍ବ ଅନୁଭବ କଲା, କାରଣ ତାର ଭଲ ବେମାର ଦେଉଥିବା ଲୋକଟି କୋଡ଼ିଏ ପଚିଶ କିଲୋମିଟରରୁ ଅଧିକ ବେଗରେ ଚଳାଇ ପାରୁ ନ ଥିଲା । ତାପରେ ଗରମ ଟବଆ ଭିତରେ ଆଣ୍ଠୁ କୁ ରଖି ବସିଥିବାବେଳେ ସେ ଲକ୍ଷ୍ୟ କଲା ଯେ ବାବୁଜୀ ଆଜି ଆସି ନଥିଲେ । ଅନ୍ୟମାନଙ୍କ ପଚାରି ବୁଝିଲା ଯେ ତାଙ୍କର ଦେହ ବେଶି ଖରାପ ହୋଇ ଯାଇଛି । ସେ ଲମ୍ବା ନାକ, ଚନ୍ଦାମାମା ଓ ବହି ପଢ଼ୁଥିବା ଭଦ୍ରବ୍ୟକ୍ତିଙ୍କୁ ଲକ୍ଷ୍ୟ କରି କହିଲା, "ଚାଲନ୍ତୁ, ଆଜି ସଂଧ୍ୟାବେଳେ ଯାଇ ବାବୁଜୀଙ୍କୁ ଦେଖି ଆସିବା ।"

# ଦ୍ୱୀପ

ମନ୍ତ୍ରୀଙ୍କ ଗାଡ଼ି ଯେତେବେଳେ ହାଇୱେ ଛାଡ଼ି ଗାଁର ମାଟିରାସ୍ତା ଧରିଲା, ସୀମାଚଳ ଲକ୍ଷ୍ୟ କଲା ଯେ ଏଇ ସାତଦିନ ଭିତରେ ଅନେକ କିଛି ବଦଳି ଯାଇଛି । ସାତଦିନ ତଳେ ଏଠାରେ ରାସ୍ତା ବୋଲି କିଛି ନଥିଲା, ସବୁଆଡ଼େ ପାଣି ହିଁ ପାଣି ଥିଲା । ଡଙ୍ଗାରେ ସେଇ ଗାଁରେ ପହଞ୍ଚିବାକୁ ସେମାନଙ୍କୁ ଘଣ୍ଟାଘଣ୍ଟା ଲାଗିଥିଲା । ସେତେବେଳକୁ ବର୍ଷା ବି ପୂରାପୂରି ଛାଡ଼ି ନଥିଲା; ଦିନବେଳେ ଆକାଶରେ ମେଘଭର୍ତ୍ତି ଥାଇ ଅନ୍ଧାର ଅନ୍ଧାର ଦେଖା ଯାଉଥିଲା ଓ ଟିପି ଟିପି ବର୍ଷା ହେଉଥିଲା । ଅସରନ୍ତି ପାଣି ମଝିରେ ଅନେକ ଗାଁର ଟାପୁ ମାନଙ୍କୁ ଟପି ସେମାନେ ଯେତେବେଳେ ସେଇ ଗାଁରେ ପହଞ୍ଚିଲେ, ବର୍ଷା ଛାଡ଼ି ସାମାନ୍ୟ ଖରା ପଡ଼ୁଥିଲା । ସେଠାରେ ଗାଁର ନାମଗନ୍ଧ ନଥିଲା । ଚତୁର୍ଦ୍ଦିଗ ବ୍ୟାପୀ ଜଳରାଶି ମଝିରେ ସାମାନ୍ୟ ଶୁଖିଲା ଜାଗା ଓ ଗୋଟିଏ ବଡ଼ ଗଛକୁ ଘେରି ଗାଁର ପ୍ରାୟ ଦେଢ଼ଶହ ଲୋକ ବସିଥିଲେ । ଦୁଇଦିନ ଆଗରୁ ଗାଁ ବୁଡ଼ି ଯାଇଥିଲା ଏବଂ ଲୋକମାନେ ଆସି ଆଶ୍ରୟ ନେଇଥିଲେ ଏଇ ଟାପୁ ଉପରେ ।

ପୂର୍ବଥର ସୀମାଚଳ ଗୋଟିଏ ସାହାଯ୍ୟକାରୀ ଦଳ ସହିତ ସେଠାକୁ ଯାଇଥିଲା । ଏଇ ଗାଁ ସହିତ ତାର ସାମାନ୍ୟ ପରିଚୟ ଥିଲା, କାରଣ ପ୍ରାୟ ବର୍ଷକ ପୂର୍ବରୁ ଦାରିଦ୍ର୍ୟର ସୀମାରେଖା ବିଷୟରେ ଲେଖିବା ପାଇଁ ସେ ଯେଉଁ ଗୋଟିଏ ନିର୍ଦ୍ଦିଷ୍ଟ ଗାଁକୁ ଚୟନ କରିବାକୁ ଯାଇଥିଲା, ଯେଇଟି ଥିଲା ଏଇ ଗାଁ'ଟି । ସୀମାଚଳ ସହରରେ ମଧ୍ୟବିତ୍ତ ପରିବାରରେ ବଢ଼ି ଆସିଥିଲା ଏବଂ ଗାଁ ବିଷୟରେ ତା'ର କୌଣସି ଧାରଣା ନଥିଲା । ଏଇ ଗାଁଟିକୁ ଆସିଥିବା ବେଳେ ତାର କେବଳ ଗୋଟିଏ ଗ୍ରାମ୍ୟ ଅଞ୍ଚଳ ସହିତ ପରିଚୟ ହେଉ ନଥିଲା, ସେ ଦାରିଦ୍ର୍ୟକୁ ପାଖରୁ ଦେଖିବାକୁ ପାଇଥିଲା ପ୍ରଥମଥର ପାଇଁ । ଅଭାବ ଓ ଦାରିଦ୍ର୍ୟ ଯେ ଏତେ କଠୋର ଓ ଅମାନୁଷିକ ହୋଇପାରେ ସେ ଏଇ ଗାଁକୁ ଦେଖି ଜାଣିଲା । ଲୋକମାନେ କେବଳ ଦାରିଦ୍ର୍ୟର ନୁହେଁ, ମନୁଷ୍ୟତ୍ୱର ସୀମାରେଖା ତଳେ ଥିଲେ, କାରଣ ସେମାନେ ଯେଉଁଭଳି ଦୈନ୍ୟରେ ରହୁଥିଲେ, ସେଥିରେ ମଣିଷର ସମ୍ମାନ ନେଇ ରହିବା ସମ୍ଭବ ନ ଥିଲା । ଏଇ ଗାଁର ଘର ସବୁ ଖାଁଟି ମାଟିର କୁଡ଼ିଆ ଥିଲା ଏବଂ ଘର ଭିତରେ ମାଟି ହାଣ୍ଡି ଛଡ଼ା ଆଉ କାହାରି କିଛି ଅନ୍ୟ ଜିନିଷ ନ

ଥିଲା । ଲୋକ ମାନଙ୍କର ଜମି ବାଡ଼ି ନ ଥିଲା; ସେମାନେ ଦିନ ମଜୁରି କରି ଚଳୁଥିଲେ ଏବଂ ଯେତେବେଳେ କାମ ମିଳୁ ନ ଥିଲା, ଜଙ୍ଗଲକୁ ଯାଇ ଚେର ମୂଳ ଖୋଜୁଥିଲେ ଅଥବା ଉପାସରେ ରହୁଥିଲେ ।

ସୀମାଚଳ ତାର ଖବର କାଗଜରେ ଏଇ ଗାଁ ବିଷୟରେ ଏକ କରୁଣ କାହାଣୀ ଲେଖିଥିଲା । ସେ ଯେତେବେଳେ ଏଇ ଅଞ୍ଚଳରେ ବନ୍ୟା ହେବାର ଖବର ପାଇଲା, ସରକାରୀ ଅଫିସମାନଙ୍କ ସହିତ ଯୋଗସୂତ୍ର କରି ସେଠାକୁ ଯିବାକୁ ସମର୍ଥ ହୋଇଥିଲା ସାହାଯ୍ୟକାରୀ ଦଳ, ଖାଇବା ଜିନିଷ ଓ ଔଷଧ ଯାଉଥିବା ଡଙ୍ଗାରେ । ସେମାନେ ଯେତେବେଳେ ସେଇ ଗାଁ ପାଖରେ ପହଞ୍ଚିଲେ, ତାଙ୍କର ଡଙ୍ଗାକୁ ଦେଖି ଲୋକମାନେ ଆନନ୍ଦରେ ପାଟି କରି ତାଙ୍କ ପାଖକୁ ଲାଗି ଆସିଲେ । ସୀମାଚଳକୁ ଦେଖି ଗାଁ ବାଲା ଖୁସି ହେଲେ । ଯଦିଓ ଲୋକମାନେ ବନ୍ୟାର ଘେରରେ ଦୁଇଦିନ ଅଖିଆ ଅପିଆ ରହିଥିଲେ, ଏଥରକ ସୀମାଚଳ ସେମାନଙ୍କ ଭିତରେ କୌଣସି ଅସହାୟତା ଲକ୍ଷ୍ୟ କଲା ନାହିଁ, ଯାହା ସେ ଲକ୍ଷ୍ୟ କରିଥିଲା ବର୍ଷକ ତଳେ ସେମାନଙ୍କ ସହିତ କଥା-ବାର୍ତ୍ତା କରିବା ବେଳେ । ସେମାନେ ଯେପରି ଏଭଳି ପରିସ୍ଥିତି ପାଇଁ ଅପ୍ରସ୍ତୁତ ନ ଥିଲେ ଏବଂ ଭୋକିଲା ରହିବାରେ ଅଭ୍ୟସ୍ତ ଥିଲେ, ଅଥବା ଏଇଭଳି ଏକ ଦୁର୍ବିପାକ ସେମାନଙ୍କୁ ଅନ୍ୟ ଲୋକରେ ପରିଣତ କରି ଦେଇଥିଲା । ଏହା ସହିତ ଲଢ଼ିବା ପାଇଁ ସେମାନେ ଯେପରି ବଦ୍ଧପରିକର ଥିଲେ ।

ଖାଇବା ଜିନିଷ ବଣ୍ଟା ହୋଇସିବା ପରେ କୋଳାହଳ ସାମାନ୍ୟ କମିଲା ଏବଂ ଗାଁ ବାଲା ସେମାନଙ୍କର ଗାଁ କେମିତି ବୁଡ଼ିଗଲା, ସେ କଥା କହିଲେ । ଯାହା କିଛି ଜିନିଷ ପତ୍ର ଥିଲା ତାକୁ ଧରି ସେମାନେ ଉଚ୍ଚ ଜମି ଉପରକୁ ଚାଲି ଆସିଥିଲେ, କିନ୍ତୁ ତାଙ୍କର କୁଡ଼ିଆ ଘର ସବୁ ଭାସି ଯାଇଥିଲା । ଆଉ କିଛି କ୍ଷୟକ୍ଷତି ହୋଇ ନ ଥିଲା, କେବଳ ଗୋଟିଏ ବୁଢ଼ା ଜରରେ ପଡ଼ି ମରିବା ଅବସ୍ଥାରେ ଥିଲା । ସୀମାଚଳ ଯାଇ ବୁଢ଼ାକୁ ଦେଖିଲା । ତା ପାଇଁ ଆଉ କିଛି କରିବାର ନ ଥିଲା, କାରଣ ବୁଢ଼ା ସେତେ-ବେଳକୁ ଶେଷ ନିଶ୍ୱାସ ନେଉଥିଲା । ତାର ପରିବାରର ଲୋକମାନେ ତାକୁ ଘେରି ବସିଥିଲେ ଏବଂ ବଣ୍ଟା ହୋଇଥିବା ଖାଇବା ଜିନିଷ ଖାଉ ଖାଉ ବୁଢ଼ାର ମରିବାକୁ ଅପେକ୍ଷା କରୁଥିଲେ ।

ଏଇ ସମୟରେ ଗଛ ପାଖରେ ପିଲାମାନଙ୍କର ଚିତ୍କାର ଶୁଣାଗଲା । ଏତେ ଦୁର୍ଦ୍ଦିନରେ ମଧ୍ୟ ପିଲାମାନଙ୍କର ଉତ୍ସାହ କମ ନ ଥିଲା । ସେମାନେ ତାଙ୍କର ଖେଳରେ ମାତି ଥିଲେ ଏବଂ ବର୍ତ୍ତମାନ ଗଛ ତଳେ ଠିଆ ହୋଇ ଗଛ ଉପରେ ଚଢ଼ିଥିବା ପିଲାକୁ ଅନାଇ ପାଟିଗୋଳ କରୁଥିଲେ । ଗଛ ଉପରେ ବିଲୁଆଟିଏ ଚଢ଼ି ଯାଇଥିଲା ଏବଂ ତାକୁ

ଧରିବା ପାଇଁ ପିଲାଟି ଗଛ ଉପରେ ଚଢ଼ିଥିଲା । ପିଲାଟି ତା ପଛରେ ସିବାବେଳକୁ ବଗୁଡ଼ି ଆହୁରି ଉପରକୁ ଚାଲି ଯାଉଥିଲା । ଏଥରକ ସବୁ ଗାଁ ବାଲା ଏଇ ଦୃଶ୍ୟ ଦେଖି-ବାକୁ ଆସି ଠିଆ ହେଲେ । ଏପରିକି ସେଇ ମରି ଯାଉଥିବା ବୁଢ଼ାର ଆତ୍ମୀୟମାନେ ମଧ୍ୟ ବୁଢ଼ାକୁ ଏକା ଛାଡ଼ି ଦେଇ ଗଛ ପାଖକୁ ଆସି ଗଲେ । ଶେଷରେ ଗଛର ସବା ଉପର ଡାଳରେ ପହଞ୍ଚି ପିଲାଟି ବଗୁଡ଼ିକୁ ଧରିବାରେ ସଫଳ ହେଲା ଏବଂ ପାଟି କରି କହିଲା, "ଏଥର ତଳକୁ ଫିଙ୍ଗି ଦଉଛି ।" ସୀମାଚଳ କହିଲା, "ଏତେ ଉପରୁ ଫିଙ୍ଗିଲେ ବଗୁଡ଼ି ତଳେ ପଡ଼ି ମରିଯିବ" । ପାଖରେ ଠିଆ ହୋଇଥିବା ଲୋକ ହସିଲା; କହିଲା, ବଗୁଡ଼ି କଣ ସହଜରେ ମରିବ ? ଯୁଆଡ଼େ ଫିଙ୍ଗିଲେ ବି ସେ ପାଦ ତଳକୁ କରି ପଡ଼ିବ ।"

ସତକୁ ସତ ପିଲାଟି ବଗୁଡ଼ିକୁ ଖୁବ୍ ଜୋରରେ ତଳକୁ ଫିଙ୍ଗିଲା, କିନ୍ତୁ ବଗୁଡ଼ି ଆସି ଆରାମରେ ତଳେ ପଡ଼ି ଝାଡ଼ି ଝୁଡ଼ି ହେଲା ଓ ନିଜର ଲାଞ୍ଜକୁ ଚାଟିବାରେ ଲାଗିଲା । ତା ପରେ ସେମାନେ ବଗୁଡ଼ିକୁ ଖାଇବାକୁ ଦେଲେ । ଦି ମିନିଟ ଭିତରେ ପୁଣି ସମସ୍ତେ ବଗୁଡ଼ିକୁ ଭୁଲି ଯାଇ ସୀମାଚଳକୁ ଘେରି ଠିଆ ହେଲେ । ଏଥରକ ସେମାନଙ୍କର ଅନୁ-ରୋଧ ଥିଲା ଯେ ସୀମାଚଳ ଯେମିତି ମନ୍ତ୍ରୀଙ୍କୁ ଆଣି ସେମାନଙ୍କ ଗାଁକୁ ଆସେ । ଭଲ-ଦିନରେ ତ ଗାଁକୁ ଆସନ୍ତି ନାହିଁ, ଏଇ ଦୁର୍ଦ୍ଦିନରେ ଅନ୍ତତଃ ଆସି ସେମାନଙ୍କ ଗାଁକୁ ଦେଖି ଯାନ୍ତୁ ।

ଗାଁକୁ ଛାଡ଼ି ସେମାନଙ୍କର ଡଙ୍ଗା ପୁଣି ଖାଦ୍ୟ ସାମଗ୍ରୀ ବାଣ୍ଟିବାକୁ ଅନ୍ୟ ଗାଁକୁ ଗଲା । ସେମାନେ ଯେତେବେଳେ ବନ୍ୟାଞ୍ଚଳରୁ ଫେରିଲେ ସଂଧ୍ୟା ହୋଇ ସାରିଥିଲା ଏବଂ ପୁଣି ବର୍ଷା ଆରମ୍ଭ ହୋଇ ଯାଇଥିଲା । ସୀମାଚଳ ସିଧା ଖବରକାଗଜ ଅଫିସକୁ ଯାଇ ତାର ରିପୋର୍ଟ ଲେଖିବାକୁ ବସିଲା ଏବଂ ବନ୍ୟା ବିଷୟରେ ଲେଖିବା ପରେ ଦେଢ଼ଶ ଲୋକ ଥିବା ଗାଁର ବୁଢ଼ାଟିଏ ଜରରେ ପଡ଼ି ମରିଯାଇଛି ବୋଲି ମଧ୍ୟ ଲେଖିଲା ।

ତା ପରେ ସୀମାଚଳ ଗାଁବାଲାଙ୍କୁ ଦେଇଥିବା ପ୍ରତିଶ୍ରୁତି ଅନୁଯାୟୀ ମନ୍ତ୍ରୀଙ୍କୁ ଖୋଜିବାକୁ ଆରମ୍ଭ କଲା । ଏ ଏକ କଠିନ ପ୍ରଚେଷ୍ଟା ଥିଲା । କନ୍‌ଫରେନସ ରୁମ, ସାଧାରଣ ସଭା, ପାର୍ଟି ଅଫିସ ଇତ୍ୟାଦି ଦେଇ ସୀମାଚଳ ଯେତେବେଳେ ମନ୍ତ୍ରୀଙ୍କୁ ଠାବ କଲା, ମନ୍ତ୍ରୀ ଟୁରରୁ ଫେରି ଥକ୍‌କା ହୋଇ ବସିଥିଲେ ଏବଂ ତାଙ୍କ ନିର୍ବାଚନ ମଣ୍ଡଳୀରେ କିପରି ରିଲିଫ୍ ଜିନଷ ବଣ୍ଟାହେବ, ସେ ବିଷୟରେ ଆଲୋଚନା କରୁଥିଲେ । ସୀମାଚଳ ତାଙ୍କୁ ସେଇ ଗାଁଟି କଥା କହିଲା ଏବଂ ସେଠାରେ ଲୋକମାନେ ଦୁଇ ଦିନ କିଛି ଖାଇ ନ ଥିବା କଥା ମଧ୍ୟ ଜଣାଇଲା । ଗାଁଟି ମନ୍ତ୍ରୀଙ୍କର ନିର୍ବାଚନ

ମଣ୍ଡଳୀରେ ନ ଥିଲା ଏବଂ ମନ୍ତ୍ରୀ ଏ ଭିତରେ ଅନେକ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ବୁଲି ସାରିଥିଲେ । ସେ ତାଙ୍କ ରାସ୍ତାରେ ପଡ଼ୁ ନ ଥିବା ଏଇ ଗାଁଟିକୁ ଯିବାକୁ ବିଶେଷ ଉତ୍ସାହ ଦେଖାଇଲେ ନାହିଁ । ସୀମାଚଳ ଏଥରକ ତାର ସାମ୍ବାଦିକତାର ଅମୋଘ ଅସ୍ତ୍ର ପ୍ରୟୋଗ କରି କହିଲା, "ଆପଣ ମତେ ସେ ଦିନ ଯୋଉ କଥା କହୁଥିଲେ···—" ।

ମନ୍ତ୍ରୀଙ୍କର ସୀମାଚଳର ଖବରକାଗଜ ସହିତ ବିଭିନ୍ନ ପ୍ରକାରର ସଂପର୍କ ଓ ପ୍ରତିଶ୍ରୁତି କଥା ମନେ ପଡ଼ିଲା । ସେ ଏଥରକ କହିଲେ, "ମୁଁ ତ ଏତେ ଗାଁ ଦେଖିଲିଣି; ଆଉ କଣ ଦେଖିବି ?" ସୀମାଚଳ କହିଲା, "ଆପଣ ଗୋଟିଏ ସବୁଠାରୁ ଗରିବ ଗାଁ ଦେଖିବେ, ଯୋଉଠାରେ ଲୋକମାନେ ଏ ପର୍ଯ୍ୟନ୍ତ ଭେକ ଉପାସରେ ଅଛନ୍ତି । ଏବଂ ଆପଣ ଯେ କହୁଛନ୍ତି ଯେ ବନ୍ୟାରେ କୌଣସି ଜୀବନ ହାନି ହୋଇ ନାହିଁ, ଏଇ ଗାଁରେ ଅନ୍ତତଃ ଜଣେ ଲୋକ ମରିଛି ।" ମନ୍ତ୍ରୀ ଏଥରକ ସହଜରେ ରାଜି ହୋଇଗଲେ ଏବଂ ତାଙ୍କର ଅନ୍ୟ କାର୍ଯ୍ୟକ୍ରମମାନଙ୍କ ସହିତ ଏଇ ଗାଁକୁ ଯିବାର ପ୍ରୋଗ୍ରାମ ମଧ୍ୟ ସାମିଲ ହୋଇଗଲା ।

କିନ୍ତୁ ସେମାନେ ପ୍ରକୃତରେ ଯାଇ ପାରିଲେ ସାତ ଦିନ ପରେ । ସେତେବେଳକୁ ବର୍ଷା ପୂରା ପୂରି ଛାଡ଼ି ଯାଇଥିଲା, ଆଉ ପାଣି ନ ଥିଲା ଏବଂ ଏତେ ଖରା ହେଉଥିଲା ଯେ ମରୁଡ଼ିର ଆଶଙ୍କା ହେଉଥିଲା । ରାସ୍ତା ଘାଟ ଶୁଖି ଯାଇଥିଲା ଏବଂ ଜିପ ବର୍ତ୍ତମାନ ସ୍ୱଚ୍ଛନ୍ଦରେ ଯାଇ ପାରୁଥିଲା । ରାସ୍ତା ଦି ପାଖକୁ ଅନାଇଲେ ବିଶ୍ୱାସ କରି ହେଉ ନ ଥିଲା ଯେ ମାତ୍ର ସାତ ଦିନ ତଳେ ଏଇ ସବୁ ଜାଗା ପାଣି ଭର୍ତ୍ତି ଥିଲା । କେବଳ ମଝିରେ ମଝିରେ ଭାଙ୍ଗି ଯାଇଥିବା ରାସ୍ତା ଓ ପୋଲକୁ ଦେଖିଲେ ବନ୍ୟାର ଭୟଙ୍କରତାର ସୂଚନା ମିଳୁଥିଲା ।

ବନ୍ୟା ହୋଇଥିବାର ଆଉ ଗୋଟିଏ ସୂଚକ ଥିଲା ଗାଁମାନଙ୍କରେ ରିଲିଫ ଗ୍ରହଣ ନେବାକୁ ଆସୁଥିବା ଲୋକମାନଙ୍କର ଭିଡ଼ । ଗାଁର ଆବାଳ ବୃଦ୍ଧ ବନିତା ବର୍ତ୍ତମାନ ସାହାଯ୍ୟକାରୀ ଦଳମାନ ନେଇ ଆସୁଥିବା ସାହାଯ୍ୟ ଅପେକ୍ଷାରେ ହିଁ ରହୁଥିଲେ । ମନ୍ତ୍ରୀ ରାସ୍ତାରେ ଯେତେ ଗାଁକୁ ଗଲେ ସବୁଠାରେ ଏଇ ଭିଡ଼ ଥିଲା, ଏବଂ ସବୁଠାରେ ସାହାଯ୍ୟର ପରିମାଣ ବିଷୟରେ ଅଭିଯୋଗମାନ ହେଉଥିଲା । ଯଦିଓ ବିଭିନ୍ନ ଜାଗାରେ ଲୋକମାନଙ୍କର ସାହାଯ୍ୟ ପାଇଁ ମାଟି କାମ ହେଉଥିଲା, ଗାଁର ସୁସ୍ଥ ସବଳ ଯୁବକମାନେ କାମ ନ କରି ରାସ୍ତା ପାଖରେ ରିଲିଫ ଗ୍ରହଣ ପାଇଁ ଧାଡ଼ି ବାନ୍ଧି ଛିଡ଼ା ହୋଇଥିଲେ । ଏ ଏକ ଅତ୍ୟନ୍ତ ଲଜ୍ଜାଜନକ ଦୃଶ୍ୟ ଥିଲା ।

ଏଇ ଭଳି ବିଭିନ୍ନ ଗାଁ ଦେଇ ଯାଉ ଯାଉ ରିଲିଫ ଜିନିଷ ସବୁ ସରିଗଲା । ମନ୍ତ୍ରୀ ସୀମାଚଳକୁ ପଚାରିଲେ, "କିଣ, ତମ ଗାଁକୁ କ'ଣ ଖାଲି ହାତରେ ଯିବା ।" ସୀମାଚଳ କହିଲା, "ମୁଁ ସେ ଗାଁ ଲୋକଙ୍କୁ କଥା ଦେଇଛି । ଅଳ୍ପ ସମୟ ପାଇଁ ହେଲେ ବି ଯିବା ।" ଏଥରକ ଜିପ ସେଇ ଗାଁର ରାସ୍ତା ଧରିବା ବେଳେ ସୀମାଚଳ ନିଜକୁ ପ୍ରଶ୍ନ କଲା, ସେ କାହିଁକି ମନ୍ତ୍ରୀଙ୍କୁ ନେଇ ସେ ଗାଁକୁ ଯାଉଛି ? କେବଳ ତାର ପ୍ରତିଶ୍ରୁତି ପୂରଣ ପାଇଁ, ନା ସେମାନେ ଗଲେ ଗାଁ ଲୋକଙ୍କର କିଛି ଉପକାର ହେବ ? ସେ ଗାଁର କଣ ସୁବିଧା ହୋଇପାରେ ମନ୍ତ୍ରୀ ସେଠାକୁ ଗଲେ ? ସୀମାଚଳ ବର୍ତ୍ତମାନ ନିଜକୁ ସାମାନ୍ୟ ଅପରାଧୀ ମନେକଲା, ଯାହା ସେ ମନେ କରିଥିଲା ସେଇ ଗାଁକୁ ପ୍ରଥମ ଥର ଯିବା ବେଳେ । ଲୋକମାନଙ୍କ ସହିତ କଥାବାର୍ତ୍ତା କରି ଫେରି ଆସିବା ପରେ ତାର ରିପୋର୍ଟ ଲେଖିବା ବେଳେ ତାର କେମିତି ମନେ ହୋଇଥିଲା ଯେ ସେଇ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ପାଇଁ ସେ ନିଜେ ଯେମିତି କୋଉ ହିସାବରେ ଦାୟୀ ।

ଗାଁ ମୁଣ୍ଡରେ ଯେତେବେଳେ ଯାଇ ଜିପ୍ ଅଟକିଲା, ସୀମାଚଳ ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ଗାଁ ଠିକ୍ ସେମିତି ଥିଲା, ଯେମିତି ତାକୁ ସେ ବର୍ଷେ ତଳେ ଦେଖିଥିଲା । ଦି ଧାଡ଼ି ଭଙ୍ଗା କୁଡ଼ିଆ ଘର, ମାଟିରେ ଖେଳୁଥିବା ଲଙ୍ଗଳା ପିଲା ଓ ଦୁବଳ କୁକୁର । ଏତେବଡ଼ ବନ୍ୟା ହୋଇଥିବାର କୌଣସି ଚିହ୍ନ ବର୍ତ୍ତି ନାହିଁ । ମନ୍ତ୍ରୀ କହିଲେ, "କିଣ, ଏ ଗାଁଟା ବେଶ୍ ଠିକ୍ଠାକ୍ ଦେଖାଯାଉଛି ! ବରଂ ଅନ୍ୟ ଗାଁମାନଙ୍କରେ ବେଶି କ୍ଷୟକ୍ଷତି ଦେଖା ଯାଉଥିଲା ।" ମନ୍ତ୍ରୀ ଠିକ୍ କହୁଥିଲେ ଏବଂ ସୀମାଚଳ ଚୁପ ରହିଲା । କିପରି ତାଙ୍କୁ ସୀମାଚଳ ବୁଝାଇଥାନ୍ତା ଯେ ଏଇ ଗାଁରେ କ୍ଷୟକ୍ଷତି ହେବାପାଇଁ କିଛି ବି ନଥିଲା ।

ଗାଁରେ ଜିପ ପହଞ୍ଚିବାରୁ ଗାଁ ବାଲା ସେମାନଙ୍କୁ ଦେଖି ଆନନ୍ଦରେ ପାଟି କରି ସେମାନଙ୍କୁ ଘେରି ଠିଆ ହେଲେ । ମନ୍ତ୍ରୀଙ୍କ ପାଖରେ ସେମାନଙ୍କର କୌଣସି ଆପତ୍ତି ଅଭିଯୋଗ ନ ଥିଲା । ମନ୍ତ୍ରୀ ଓ ତାଙ୍କର ଜିପ୍ ଗାଡ଼ି ଯେପରି କେବଳ ସେମା-ଙ୍କର ସାମୟିକ ଅବସର ବିନୋଦନର ସାମଗ୍ରୀ ଥିଲେ । ମନ୍ତ୍ରୀ ସେମାନଙ୍କୁ ଅତି ଅଳ୍ପ ଦିନ ଭିତରେ ଖାଇବା ଜିନିଷ ପହଞ୍ଚାଇ ଦେବାର ପ୍ରତିଶ୍ରୁତି ଦେଲେ । ତା ପରେ ଆଉ କାହାରି ପକ୍ଷରୁ କିଛି କହିବାର ନ ଥିଲା । ଏଥରକ ସୀମାଚଳ ଚେତାଇ ଦେଲା, ଯେଉଁ ବୁଢ଼ା ମରି ଯାଇଥିଲା, ତାର ପରିବାରକୁ ମନ୍ତ୍ରୀ କିଛି ସାହାଯ୍ୟ ଦିଅନ୍ତୁ । ମନ୍ତ୍ରୀ ଯେତେବେଳେ ତତ୍‌କ୍ଷଣାତ ସାହାଯ୍ୟ ଘୋଷଣା କଲେ, ଗାଁବାଲା ହସିଲେ । କାରଣ, ବୁଢ଼ା ମରି ନ ଥିଲା । ଜିପ ପାଖକୁ ଆସି ନ ପାରିଥିଲେ ବି ସେ ତା କୁଡ଼ିଆ ଆଗରେ ବସି ରହି ଏ ସବୁ କଥାକୁ ଉପଭୋଗ କରୁଥିବାର ଜଣା ପଡୁଥିଲା ।

ଗାଁ ଗ୍ରୁଡ଼ିବା ପାଇଁ ସେମାନେ ଗାଡ଼ିରେ ବସିଲେ । ଏଇ ସମଗ୍ର ଯାତ୍ରାଟି ବର୍ତ୍ତମାନ ଅର୍ଥହୀନ ମନେହେଲା । କ'ଣ ପାଇଲେ ଗାଁର ଲୋକମାନେ ସେମାନଙ୍କ ଅସିବାରୁ ? ତାର ହୁଏ ତ ଲାଭ ହେଲା, ସେ ଯାଇ ଖବରକାଗଜରେ ଗାଁ ବିଷୟରେ ଲେଖିବ । କିନ୍ତୁ ଲୋକମାନେ ଯେଉଁ ଦୁର୍ଦ୍ଦଶା କାହାଣୀ ପଢ଼ିବାକୁ ଗ୍ରହିଁଛନ୍ତି, ତାର ଉଦାହରଣ ତ ଏ ଗାଁରେ ନଥିଲା । ଏପରିକି ଯେଉଁ ଗ୍ରୁଟାକୁ ନେଇ ସାମାନ୍ୟ କରୁଣାର ଉଦ୍ରେକ ହୋଇଥାନ୍ତା, ସେ ମଧ୍ୟ ମରି ନଥିଲା । ମନ୍ତ୍ରୀଙ୍କ ଭଳି ସୀମାଚଳ ବି ନିରାଶ ହେଲା । ଜିପ ଗ୍ରୁଡ଼ିବାରୁ ମନ୍ତ୍ରୀ କହିଲେ, "କ'ଣ ଏଥରକ ସନ୍ତୁଷ୍ଟ ହେଲ ତ ? ହଉ କାଲି ଏଠିକି କିଛି ରିଲିଫ ପଠାଇ ଦବା ।"

ସୀମାଚଳ ଜିପରେ ବସି ପଛକୁ ଅନାଇଲା । ସଞ୍ଜର ନିଷ୍ପ୍ରାଣ ଆଲୁଅରେ ସବୁଆଡୁ ଅଲଗା ରହିଥିବା ଦ୍ୱୀପ ଭଳି ଗାଁଟି ମ୍ଲାନ ଓ ମଳିନ ଦେଖାଯାଉଥିଲା । ବର୍ଷେକ ତଳେ ସେ ଏଇ ଗାଁଟିକୁ ଯେମିତି ଦେଖିଥିଲା, ଠିକ୍ ସେମିତି । କିଛି ବି ପରିବର୍ତ୍ତନ ହୋଇ ନ ଥିଲା ଏଠାରେ । ଏଇ ପୁରୁଣା ଗାଁରେ ଘର ସବୁ ସେମିତି ଭଙ୍ଗା ଚୁଜା, ଲୋକମାନେ ସେମିତି ଗରିବ ଓ ସେମିତି ଭୋକ ଉପାସରେ ଏବଂ ସେମାନଙ୍କର ଆଶା ନିରାଶାରେ କୌଣସି କ୍ଷୟ ବୃଦ୍ଧି ହୋଇ ନାହିଁ । ଗ୍ରୁଡ଼ା ଏବେ ବି ବଞ୍ଚିଛି; ପିଲମାନେ ଲଙ୍ଗଳା ହୋଇ ଖେଳୁଛନ୍ତି; ବିରାଡ଼ି ମରି ନାହିଁ; ଗାଁ ବନ୍ୟାରେ ଉଜାଡ଼ ହୋଇଯାଇ ନାହିଁ । ସ୍ୱାଧୀନତା, ପଞ୍ଚବାର୍ଷିକ ଯୋଜନା ଏ ଗାଁର କୌଣସି ଲାଭ କରି ନାହାନ୍ତି; ଅବହେଳା ଓ ବନ୍ୟାରେ ଗାଁର କ୍ଷତି ହେବାର କିଛି ନାହିଁ । ସୀମାଚଳ ନିଜକୁ ସାମାନ୍ୟ ଆଶ୍ୱାସନା ଦେଲା ଏବଂ ଜିପ ମୋଡ଼ ବୁଲିବା ପୂର୍ବରୁ ଗାଁ ଆଡ଼କୁ ଶେଷଥର ପାଇଁ ଅନାଇଲା । ସବୁ ଠିକ୍ ସେମିତି ଆଗ ଭଳି ଭଙ୍ଗା ଦଦରା ଦାରିଦ୍ର କାତର କିନ୍ତୁ ଜୀଇଁବାର ଅଦମ୍ୟ ଇଚ୍ଛା ନେଇ ରହିଛି । କିଛି ବି ବଦଳି ନାହିଁ ଏଇ କେଉଁ କେତେ କାଳର ଗାଁ ଏବଂ ତାର ଲୋକମାନଙ୍କର ।

# ଦିନଚର୍ଯ୍ୟା

ସୁମିତା ନିଦରୁ ଉଠି ଅଳସ ଭାଙ୍ଗିଲା, ଶୋଇବା ଘରର ଚାରି ଆଡ଼କୁ ଅନାଇଲା ଏବଂ ମନକୁ ମନ କହିଲା, ନା, ଆଜି ବି କିଛି ଭଲ ଲାଗୁନାହିଁ । ଯଦିଓ ଘରର ସବୁ ଜିନିଷପତ୍ର ସୁପରିଚ୍ଛନ୍ନ ଏବଂ ସୁବ୍ୟବସ୍ଥିତ ଥିଲା, ସୁମିତାର ମନେ ହେଲା ଯେମିତି ତା ମନର ରିକ୍ତତା ସବୁ ଯାଇ ଏଇ କୋଠରୀର ସବୁ ଅଂଶରେ ଗୋଟିଏ ପରସ୍ତ ଜମି ଯାଇଛି । ଏପରିକି, ସେ ଯଦି ଝରକା ଖୋଲିଦିଏ, ଏଇ ଶୂନ୍ୟତା ଯେମିତି ତା ଆଖି ପାଉଥିବା ପର୍ଯ୍ୟନ୍ତ ରାସ୍ତା ଘର ଗଛ ପତ୍ର ସମେତ ସାରା ଆକାଶକୁ ଆବୃତ କରିଦେବ ।

ସୁମିତାର ଘରେ ସବୁ କିଛି ସୁନିୟନ୍ତ୍ରିତ ଥିଲା । ବେଡ୍ ସାଇଡ୍ ଟେବୁଲ ଉପରେ ଚାକର ଚା ରଖି ଦେଇଥିଲା । ପାଖରେ ସକାଳର ଖବର କାଗଜ ପଡ଼ିଥିଲା । ପାଖ କୋଠରୀରେ ସୁମିତାର ସ୍ୱାମୀ ବସି କାମ କରୁଥିଲା । ଟିନା ସ୍କୁଲ ଚାଲି ଯାଇଥିଲା । ରୋଷାଇ ଘରେ ବ୍ରେକ୍‌ଫାଷ୍ଟ ତିଆରି ହେବାର ଟୁଣ୍ଟୁଣ ଶବ୍ଦ ଶୁଭୁଥିଲା । ସବୁ ନିୟମାନୁଯାୟୀ, ସମୟାନୁବର୍ତ୍ତୀ । ସୁମିତା ବାଥରୁମ ଭିତରକୁ ଗଲା । ସବୁ ଯେ ଯାହା ସ୍ଥାନରେ ସୁରକ୍ଷିତ, ସଫା ସୁତୁରା, ଚକମକ । ସୁମିତା ଭାବିଲା, ନିଜର ମନକୁ ଯଦି ସେ ନିୟନ୍ତ୍ରଣ ଭିତରକୁ ଆଣି ଏଇପରି ସମନ୍ୱିତ ସନ୍ତୁଳିତ କରି ଦେଇ ପାରନ୍ତା ! ଦୀର୍ଘ ନିଃଶ୍ୱାସ ନେଇ ସୁମିତା ନିଜ ଉପରେ ପାଣି ଢାଳିଲା । ଯେମିତି ସାବୁନରେ ଦେହକୁ ଘଷି ମାଜି ସେ ନିଜର ସମସ୍ତ କ୍ଳାନ୍ତି ବିରକ୍ତି ଅବସାଦକୁ ଧୋଇ ପୋଛି ବାହାର କରି ଦେବ ।

ଦର୍ପଣ ପାଖରେ ଠିଆ ହୋଇ ସୁମିତା ଜାଣିଲା ଏ କଥା ସମ୍ଭବ ନୁହେଁ । କାଚ ଭିତରେ ତାର ମୁହଁ ଅବସନ୍ନ ଦିଶୁଛି । ଆଖି ଦୁଇଟି ସମ୍ପୂର୍ଣ୍ଣ ଭାବ ଓ ଉତ୍ତେଜନା ବିହୀନ । ଓଠରେ ରଙ୍ଗ ନାହିଁ; ଆଖି ତଳେ କଳା ଦାଗ । ସବୁ କିଛି ଫିକା, ନିଷ୍ପ୍ରଭ, ବିବର୍ଣ୍ଣ ଓ ନିଷ୍ପ୍ରାଣ । ଖୋଲା ହୋଇ ତଳେ ପଡ଼ିଥିବା ରାତିର ପୋଷାକ ଭଳି । ଅନେକ ବାଧ୍ୟ ବାଧକତାର ସହିତ ସେ ତାର ଲୁଗା ପଟା ପିନ୍ଧିବାକୁ ଲାଗିଲା ।

ଡ୍ରେସିଂଟେବୁଲ ଉପରେ ସଜା ହୋଇ ରହିଥିବା କସ୍‌ମେଟିକ ସବୁ ତାର ମୁହଁରେ ସାମାନ୍ୟ ରଙ୍ଗ ଆଣି ଦେଲେ, କିନ୍ତୁ ତାର ନିଜ ଭିତରର ଅବସାଦରେ କୌଣସି ପରିବର୍ତ୍ତନ ହେଲା ନାହିଁ । ବରଂ ଏଇ ସକାଳେ ନିଦରୁ ଉଠି ଗାଧୋଇ ନିଜକୁ ସଜାଇବା ତାକୁ ସମ୍ପୂର୍ଣ୍ଣ ଯୁକ୍ତିହୀନ ଓ ଅନାବଶ୍ୟକ ମନେହେଲା । ନିତାନ୍ତ ଅନିଚ୍ଛାର ସହିତ ସେ ଉଠି ଠିଆ ହେଲା ଏବଂ ଦିନର ସାମନା କରିବାକୁ ପାଦ ବଢ଼ାଇଲା ।

ସୁମିତ୍ରାକୁ ଦେଖି ତାର ସ୍ୱାମୀ କାଗଜ ଉପରୁ ମୁହଁ ଉଠାଇ ତା ଆଡ଼କୁ ଅନାଇଲା । ସୁମିତ୍ରା ଭାବିଲା ତାର ମୁହଁକୁ ଦେଖି ସ୍ୱାମୀ ତାର ମନର ଭାବକୁ ଜାଣି ପାରିବ ଏବଂ ସହାନୁଭୂତିର ସହିତ ପଚାରିବ, କଣ ଦେହ ଖରାପ ଅଛି ? ସେ କିନ୍ତୁ ନିଜର ଦୁର୍ବଳତାକୁ ତା ଆଗରେ ପ୍ରକାଶ ନ କରି କହିବ, ନା ତ ! ମାତ୍ର ଏପରି କିଛି ହେଲା ନାହିଁ । ତାର ସ୍ୱାମୀ କହିଲା, "ତମେ କଣ ସବୁ କିଣିବ ବୋଲି କହୁଥିଲ, ଆଜି ଖବରକାଗଜରେ ବାହାରିଛି ସାତ ଦିନ ସେଲ୍ ଅଛି । କୋଡ଼ିଏ ପରସେଣ୍ଟ ଡିସକାଉଣ୍ଟ ।

ସୁମିତ୍ରା ନିରାଶ ହେଲା ଏବଂ ସ୍ୱାମୀ ସହିତ କୌଣସି ଆଳରେ କଳି କରିବା ଉଦ୍ଦେଶ୍ୟରେ କହିଲା, "ମୁଁ ତମକୁ ଯୋଉ ଔଷଧ ଆଣିବାକୁ କହି ଥିଲି, କଣ ହେଲା ?" ତାର ଦୁର୍ଭାଗ୍ୟକୁ ସ୍ୱାମୀ ଔଷଧ ଆଣି ରଖିଥିଲା ଏବଂ ତାକୁ ସୁମିତ୍ରା ଆଡ଼କୁ ବଢ଼ାଇ ଦେଇ କହିଲା, "କାଲି ଠାରୁ ଆଣିଲିଣି; ଦବାକୁ ଭୁଲି ଯାଇଥିଲି ।" ସୁମିତ୍ରା ଔଷଧ ବୋତଲକୁ ଏପାଖ ସେପାଖ ଘୂରାଇ ବୁଲାଇ ଦେଖିଲା । ନା, ଔଷଧ ଠିକ ଅଛି; ସିଲ ବନ୍ଦ ଅଛି । ଏକ୍‌ସପାୟାରି ଡେଟ୍ ଆହୁରି ଅନେକ ଦିନ ଅଛି । କିଛି ବି ତ୍ରୁଟି ନାହିଁ ସେଇ ଔଷଧ ବୋତଲରେ ଯାହାକୁ ନେଇ ସେ ଆଉଏକ କଟୁତାପୂର୍ଣ୍ଣ ବାଦ ବିବାଦର ଆରମ୍ଭ କରିବ ।

ହତାଶ ହୋଇ ସେ ରୋଷେଇ ଘରକୁ ଗଲା । ଏଠାରେ ସେ ଚାକରର ବିଭିନ୍ନ ପ୍ରକାରର ଭୁଲ ଭ୍ରାନ୍ତି ଓ ଅକର୍ମଣ୍ୟତାକୁ ନେଇ ନିଜର କ୍ରୋଧ ଓ ବିରକ୍ତିକୁ ସବାକ ରୂପ ଦେଇ ପାରିଥାନ୍ତା । କିନ୍ତୁ ସେ ସ୍ୱାମୀ ସହିତ କଥାବାର୍ତ୍ତା ପରେ କ୍ଳାନ୍ତ ବୋଧ କରୁଥିଲା ଏବଂ ଆଉ ଯୁକ୍ତି ତର୍କ ଅଥବା ଭର୍ତ୍ସନା କରିବାର ମନସ୍ଥିତିରେ ନ ଥିଲା । ବରଂ ସେ ମନକୁ ମନ କହିଲା, ଯାଉ, ସବୁ ଯାଉ । ଟୋଷ୍ଟ ଜଳି ପୋଡ଼ି ଯାଉ । କପ୍ ପ୍ଲେଟ ଭାଙ୍ଗି ଯାଉ । ଚା ଥଣ୍ଡା ହୋଇ ଯାଉ । ଯିଏ ଯାହା କରୁଛ, କର । ମୁଁ ଆଉ କାହାରିକି କିଛି କହି ପାରିବି ନାହିଁ ।

ବର୍ତ୍ତମାନ ଖାଇବା ଟେବୁଲ ଉପରେ ବସି ସୁମିତ୍ରା ଓ ତାର ସ୍ୱାମୀ ବ୍ରେକଫାଷ୍ଟ ଖାଉଥିଲେ । ଟୋଷ୍ଟ ଠିକ ସୁନା ରଙ୍ଗର ଓ ଉପଯୁକ୍ତ ଉତ୍ତାପର ଥିଲା ।

ଅମଲେଟରେ ଲୁଣ ଠିକ୍ ଥିଲା; ଟି ଗରମ ଥିଲା । ସ୍ୱାମୀ ଭଲ ମୁଡ୍‌ରେ ଥିଲା । କେବଳ ସୁମିତା ନିଜର ମନକୁ ଆୟତ୍ତ କରି ପାରୁ ନ ଥିଲା । ତାର ସ୍ୱାମୀ କହିଲା, "ଏ ମାସରେ ଆମକୁ ବହୁତ ଲୋକଙ୍କ ଖାଇବାକୁ ଡାକିବାର ଅଛି ।" ସୁମିତା ଭାବିଲା ଚିତ୍କାର କରି କହିବ, ମତେ ଏ ପାର୍ଟି ସବୁ ଆଉ ଭଲ ଲାଗୁ ନାହିଁ । ସେଇ ଏକା ଭଲ ଲୋକ; ଏକାଭଳି ମପାଚୁପା ଓ ସତର୍କ ସଲାପ; ସେଇ ଭଦ୍ର ପୋଷାକ, ଅତ୍ୟାଧୁନିକ ବେଶଭୂଷା । ସାମାନ୍ୟ ମିଥ୍ୟାର ଆଶ୍ରିତ କଥୋପକଥନ; କ୍ଷଣାଗ୍ରସ୍ତ ଅବସ୍ଥାର ସାମୟିକ ଅନ୍ତରଙ୍ଗତା ଓ ଭଙ୍ଗୁର ଦ୍ରବଣ୍ରୁ ଉମାନ । ସୁମିତାର ପୁଣି ମନେ ପଡ଼ିଲା କିଛି ନ ଥିବା ସମସ୍ତ କଥା । ହାତ ଘଡ଼ିରେ ଅତି ମନ୍ଥର ଗତିରେ ଗ୍ଳୁଥିବା କଣ୍ଟା; ଶୂନ୍ୟରୁ ଝୁଲି ରହିଥିବା ଘଣ୍ଟା ମିନଟ ସେକେଣ୍ଡ ଲମ୍ବା ବଲ୍ଲୀତା, ବ୍ରେକଫାଷ୍ଟରୁ ଲଞ୍ଚ ଓ ଲଞ୍ଚରୁ ଡିନରର ବ୍ୟବଧାନର ଗୋଟିଏ ଗୋଟିଏ ସମ୍ମୁଖର । ତାର ବର୍ତ୍ତମାନ ଆଉ ଭୋକ ନ ଥିଲା ଏବଂ ସେ ଜାଣିଥିଲା ଯେ ସେ ଆଉ ଖାଇବ ନାହିଁ । ତଥାପି ସେ ଅମଲେଟଟିକୁ ଛୁରି ଦେଇ ଆହୁରି ଗ୍ରୋଟ ଗ୍ରୋଟ କରି କାଟିଲା ଏବଂ କହିଲା, "ଏ ସପ୍ତାହରେ ନୁହେଁ, ଆର ସପ୍ତାହରେ । ଏ ଭିତରେ ବରଂ ସେଇ ନୂଆ ଫିଲ୍ମଟା ଦେଖିବା ।"

ଦଶଟା ବେଳେ ସ୍ୱାମୀ ଅଫିସ ବାହାରି ଗଲା । ପାଞ୍ଚ ମିନଟ ପରେ ଡାକବାଲା ବେଲ୍ ଦେଲା । ଇଲେକଟ୍ରିକ ବିଲ୍‌ର ନୋଟିସ ଥିଲା । ଆଉ କିଛି ବି ଚିଠି ଆଣି ଆସେ ନାହିଁ ଡାକବାଲା । ସୁମିତାର ମନେ ପଡ଼ିଲା କଲେଜରେ ପଢ଼ିଲା ବେଳେ ସେ ଦେଶ ବିଦେଶର ପେନ୍ ଫ୍ରେଣ୍ଡ୍‌ମାନଙ୍କୁ ଚିଠି ଲେଖୁଥିଲା ଏବଂ ପ୍ରତିଦିନ ଡାକରେ ତା ପାଖକୁ ରଙ୍ଗବେରଙ୍ଗ ଲଫାପାରେ ଅନେକ ଚିଠି ଆସୁଥିଲା । ଆଜିକାଲି ଡାକରେ କେବଳ ଅବୈଜ୍ଞିକ ଟେଲିଫୋନ ବିଲ୍, ଡିଜାଇଭାଣ୍ଡରେ ମିଳୁଥିବା ଶାଢ଼ୀର ବିଜ୍ଞାପନ, ନିମନ୍ତ୍ରଣ ପତ୍ର । ଇଲେକଟ୍ରିକ ବିଲ୍‌ର ଲଫାପାକୁ ନ ଖୋଲି ସେ ସେମିତି ଟେବୁଲ ଉପରେ ରଖି ଦେଲା ଏବଂ କୋଉଦିନ ତଳେ ଅଧା ପଢ଼ି ରଖି ଦେଇଥିବା ବହିଟିକୁ ଖୋଜିବାକୁ ଗଲା ।

ଟେଲିଫୋନ ବାଜିଲା ଏବଂ ରିସିଭର ଉଠାଇ କିଛି କହିବା ପୂର୍ବରୁ ସେ ପାଖରୁ ମିସେସ ଶର୍ମାଙ୍କର ଅନିବାର୍ଯ୍ୟ କଣ୍ଠସ୍ୱର ଭାସି ଆସିଲା, "ଭଉଣୀଲେ, ମୁଁ ପାଞ୍ଚଥର ଡାଏଲ କରି ସାରିବା ପରେ ଆପଣଙ୍କର ନମ୍ବର ପାଇଲି । ଆଜିକାଲି ଟେଲିଫୋନ ସର୍ଭିସ ଯାହା ହେଲାଣି ନା !" ସୁମିତା କହିଲା, "ଆମ ଟେଲିଫୋନ ବି ବେଶ୍ କିଛି ଦିନ ହେଲା ଖରାପ ଥିଲା ।" ମିସେସ୍ ଶର୍ମା କହିଲେ, "ଖାଲି ଟେଲିଫୋନ ତ ନୁହେଁ, ଏ ପାଖରେ ଇଲେକଟ୍ରିକ ବି ବନ୍ଦ ଅଛି । କାଲି ରାତିରେ ବି ବିଜୁଳି ବନ୍ଦ ରହିଲା ଅନେକ ସମୟ ପର୍ଯ୍ୟନ୍ତ; ଟି. ଭି.ରେ ଭଲ ପ୍ରୋଗ୍ରାମ ମିସ୍ କଲୁ ।" ସୁମିତା କହିଲା,

“ଖବର କାଗଜରେ ବାହାରିଥିଲା କୋଉ ସମସ୍ତରେ କୋଉ ଅଞ୍ଚଳରେ ଲୋଡ୍ ଶେଡ଼ିଙ୍ଗ ହେବ ।” ମିସେସ ଶର୍ମା କହିଲେ, “ସତରେ ? କିନ୍ତୁ କିଏ ଏତେ ଟିକିନିଖି କରି ଖବର କାଗଜ ପଢ଼ୁଛି ?” ସୁମିତା ଭାବିଲା, ସକାଳର ଖବରକାଗଜରେ ସେ ଦିନ ପାଣି ସପ୍ଲାଇ ବନ୍ଦ ହେବା ବିଷୟରେ ବାହାରିଥିଲା ବୋଲି କହିବ, କିନ୍ତୁ ମିସେସ ଶର୍ମା ତାକୁ କଥା କହିବାର ଅବସର ନ ଦେଇ କହି ଚାଲିଥିଲେ, “ସେଇ ମର୍ଡର କେସ କଥା ଏତେ ବିସ୍ତାରରେ ବାହାରୁଛି ଯେ, ସେଇ ଖବର ଟିକ ପଢ଼ୁ ପଢ଼ୁ ସମସ୍ତ ଚାଲି ଯାଉଛି ।”

ସୁମିତା ଭାବିଲା, କଣ ଦରକାର ଏଇ ଜବରଦସ୍ତି ସ୍ତ୍ରୀ ଲୋକ ସହିତ କୋଉ ମର୍ଡ଼ର କେସ ବିଷୟରେ ଆଲୋଚନା କରି । କିନ୍ତୁ ସେ କହିଲା, “ଆଉ କୋଉ ଖବରକାଗଜରେ କୁଆଡ଼େ ବାହାରି ଥିଲା ଯେ ସେ ଝିଅର ପରିବାରର ଲୋକମାନେ ବି କେମିତି ଏଇ ହତ୍ୟା ସହିତ ଜଡ଼ିତ ।” ମିସେସ ଶର୍ମା କହିଲେ, “ସତରେ ? କଣ କିଛି ପ୍ରେମ ଫ୍ରେମ କଥା ଅଛି କି ?” ସୁମିତା ଭାବିଲା ଟେଲିଫୋନକୁ କାଟି ଦେଇ ଏଇ ଅଯଥା ଆଗ୍ରହୀ ସ୍ତ୍ରୀ ଲୋକର ଅସୁସ୍ଥ କୌତୁହଳକୁ ଆଉ ପ୍ରଶ୍ରୟ ଦେବ ନାହିଁ । କଣ ଆସେ ଯାଏ ତାର ସେଇ ଝିଅଟିର ତାର ପଡ଼ୋଶୀ ସହିତ ପ୍ରେମ ଥିଲା କି ନାହିଁ ସେ କଥାରୁ ? ସୁମିତା କାନ୍ଥ ଘଣ୍ଟାକୁ ଦେଖିଲା ଏବଂ କହିଲା, “ପୋଲିସ ସବୁ ଚିଠି ପତ୍ର ଜବତ କରି ଦେଇଛନ୍ତି...।” ତା କଥାକୁ କାଟି ମିସେସ ଶର୍ମା କହିଲେ, “ବାହାରେ କିଏ ବେଲ୍ ଦେଉଛି । ମୁଁ ଟେଲିଫୋନ ରଖୁଚି । ଟିକିଏ ପରେ ପୁଣି ଫୋନ କରିବି ।”

ସୁମିତାର ଉଚିତ ଥିଲା ଆଗରୁ ଟେଲିଫୋନ କାଟି ଦେବା । ବର୍ତ୍ତମାନ ରିସିଭରକୁ ରଖି ରଖି ସୁମିତା ନିଷ୍ପତ୍ତି କଲା ଯେ ଏଥରକ ନିଶ୍ଚୟ ମିସେସ ଶର୍ମା କଥା କହୁଥିବା ବେଳେ ରିସିଭର ରଖି ଦେବ । ଏହି ନିଷ୍ପତ୍ତି ନେଇ ସେ ପୁଣି ଥରେ ଟେଲିଫୋନର ଘଣ୍ଟି ବାଜିବାକୁ ଜଗି ବସିଲା । କିନ୍ତୁ ଏଇ ଧୈର୍ଯ୍ୟର ଖେଳରେ ହାର ହେଲା ସୁମିତାର । ମିସେସ ଶର୍ମା ଆଉ ଟେଲିଫୋନ କଲେ ନାହିଁ ।

ଟେଲିଫୋନ ବହିରୁ ସୁମିତା ଅଭିଜିତର ନମ୍ବର ବାହାର କରି ତାକୁ ଫୋନ କଲା । ଦୁଇଥର ଟେଲିଫୋନ ଏନଗେଜଡ଼୍ ଆସିଲା । କାଳେ ନମ୍ବର ଭୁଲ ଥାଇ-ପାରେ ବୋଲି ସେ ବହିରୁ ପୁଣି ଥରେ ନମ୍ବର ମିଳାଇ ଦେଖିଲା । ଏଥରକ ସେ ପାଖରୁ ଝିଅର କଣ୍ଠସ୍ୱର ଆସିଲା । ଏଇଟି ଅଭିଜିତର ହିଁ ନମ୍ବର ଥିଲା ଏବଂ ତାର ସେକ୍ରେଟେରୀ ଜାଣିବାକୁ ଚାହୁଁଥିଲା କିଏ ଅଭିଜିତ ସହିତ କଥାବାର୍ତ୍ତା କରିବାକୁ ଚାହେଁ । ବିରକ୍ତ ହୋଇ ସୁମିତା କହିଲା, “ମିସେସ ଶର୍ମା ।” ପୁଣି ଥରେ ଲାଇନ

କହିଗଲା; ଝିଅଟି ଅଭିଜିତ ସହିତ କଥା କହି ସୁମିତ୍ରାକୁ ତାର ଠିକଣା ପଚାରିଲା । ଏଥରକ ସୁମିତ୍ରା ତାର ଠିକ୍ ଠିକଣା ଦେଲା ଏବଂ ଅଭିଜିତ ଲାଇନକୁ ଆସିବାରେ ତାକୁ କହିଲା, "ସେ ଝିଅକୁ କହିଦିଅ ତମକୁ ଲାଇନ ଦବା ଆଗରୁ ମତେ ଅଧଘଣ୍ଟାଏ ଜେରା କରିବ ନାହିଁ ।"

ତାର କଥାକୁ ଗୁରୁତ୍ୱ ନ ଦେଇ ଅଭିଜିତ କହିଲା, "ମୁଁ ବର୍ତ୍ତମାନ ଟିକିଏ ବ୍ୟସ୍ତ ଅଛି । କଣ କଥା ଥିଲା ?" ସୁମିତ୍ରା କହିଲା, "ମୋର ବେଳକୁ ତମର ସବୁ ବ୍ୟସ୍ତତା । କଣ ଏମିତି ଜରୁରୀ କାମ କରୁଚ ବର୍ତ୍ତମାନ ?" ଅସମଂଜସରେ ଥାଇ ଅଭିଜିତ ଜବାବ ଦେଲା, "ପରେ କହିବ । ନ ହେଲେ ତମେ ଟେଲିଫୋନ ପାଖରେ ଥାଅ, ମୁଁ ପାଞ୍ଚ ମିନିଟ ଭିତରେ ଟେଲିଫୋନ କରିବି ।"

"ନା; ମୁଁ ବାହାରୁ ଟେଲିଫୋନ କରୁଛି; ଅପେକ୍ଷା କରି ପାରିବି ନାହିଁ । ତମେ ଏବେ ଆସି ମତେ ଦେଖା କର ।"

"କୋଉଠି ?", ଅଭିଜିତ ପଚାରିଲା ।

"କଫି କର୍ନରରେ । ବର୍ତ୍ତମାନ ଦଶଟା ପଞ୍ଚଚାଳିଶ ହେଲା । ଠିକ୍ ଏଗାରଟା ବେଳକୁ ସେଠି ଯେମିତି ପହଞ୍ଚିବ ।"

"ଦେଖ, ବର୍ତ୍ତମାନ ଟିକିଏ ଅସୁବିଧା ଅଛି···" ।

"ମୁଁ ସୁବିଧା ଅସୁବିଧା କଥା ଜାଣେ ନାହିଁ । ମୁଁ କଫି କର୍ନରକୁ ଯାଉଛି ।"

"ଆଚ୍ଛା, ଟିକିଏ ଧର," ଅଭିଜିତ କହିଲା । ଏଥରକ ସେ ବୋଧହୁଏ ପାଖରେ ଥିବା ଲୋକମାନଙ୍କୁ ବିଦାୟ ଦେଲା ଏବଂ ଏକାକୀ ହେବା ପରେ କହିଲା, "କଣ ହେଲା ? ଏତେ ଦିନ ଯାଏ କିଛି ଖବର ନାହିଁ, ଆଜି ହଠାତ୍ କାହିଁକି ଆସିବାକୁ କହୁଚ ?"

"ମୁଁ ଟେଲିଫୋନରେ ଏତେ ଜବାବ ଦେଇ ପାରିବି ନାହିଁ । ତମେ ନ ଆସିଲେ ନ ଆସ । ତମ ଇଚ୍ଛା । ମୁଁ କିଛି ତମକୁ ବାଧ୍ୟ କରୁ ନାହିଁ ।"

"ଆଚ୍ଛା, କଫି କର୍ନର ନ ଯାଇ ସେଇ ଷ୍ଟେସନ ପାଖରେ ଯୋଉ ରେସ୍ତୋରାଁ ଅଛି, ସେଠିକି ଗଲେ ହବ ?"

"ମୁଁ କୋଉ ରେସ୍ତୋରାଁ ଦେଖିନାହିଁ ।"

"ଏଇ ତ ସେଦିନ ଯାଇଥିଲେ ଉପରବେଳା ! ଠିକ୍ ଷ୍ଟେସନ ସାମନାରେ । ତମେ ସେଇଠିକି ଆସ ।"

“ମୁଁ ସେଠିକି ରାସ୍ତା ଜାଣେନା । ମୁଁ କଫି କର୍ନରକୁ ଯାଉଛି । ତମ ଇଚ୍ଛା ହେଲେ ଆସିବ ।” ଏତିକି କହି ସୁମିତ୍ରା ଟେଲିଫୋନକୁ ଜୋରରେ ରଖିଦେଲା ।

ଏଥରକ ସେ ଟେଲିଫୋନ ପାଖରୁ ଧୀରେ ଉଠିଲା ଓ ଶାଢ଼ି ବଦଳାଇବାକୁ ଗଲା । ତାର କୌଣସି ବ୍ୟସ୍ତତା ନ ଥିଲା । ସେ ଡ୍ରାଇଭରକୁ ଛୁଟି କରିବାକୁ କହିଲା । ଛୁ ପିଇସାରି ଟ୍ୟାକ୍‌ସି ନେଇ ସେ ଯେତେବେଳେ କଫି କର୍ନରରେ ପହଞ୍ଚିଲା, ଏଗାରଟା ଛୁଇଁଶ ବାଜିଥିଲା । ଅଭିଜିତ ଗୋଟିଏ କଣରେ ବସି କଫି ପିଉଥିଲା ଏବଂ ବିରକ୍ତ ହୋଇ ନିଜର ଘଡ଼ି ଦେଖୁଥିଲା । ସୁମିତ୍ରା ତା ପାଖକୁ ଆସିବାରୁ କହିଲା, “ମୁଁ ଘଣ୍ଟାଏ ହେଲା ଆସି ଏଠାରେ ବସିଲିଣି ।”

ସୁମିତ୍ରା ବସୁ ବସୁ କହିଲା, “ମୋ ପାଖରେ ତ ଆଉ ଗାଡ଼ି ନାହିଁ ଯେ ପାଞ୍ଚ ମିନିଟ୍ ଭିତରେ ଆସି ପହଞ୍ଚିବ ? ଟ୍ୟାକ୍‌ସି ମିଳିବାକୁ ଡେରି ହେଲା ।”

ଅଭିଜିତ କହିଲା, “କଣ ଛୁ ପିଇବ, ନା କଫି ? ମତେ ସାଢ଼େ ବାରଟା ଭିତରେ ଅଫିସ ଫେରିଯିବାକୁ ହେବ ।”

ସୁମିତ୍ରା କହିଲା, “ତମେ ତା ହେଲେ ଯାଅ । ମୁଁ ମୋର ଅର୍ଡର ଦେବି ।” ଏଥରକ ସୁମିତ୍ରା ରାସ୍ତା ଆଡ଼କୁ ମୁହଁ ବୁଲାଇ ବସିଲା ଏବଂ ବ୍ୟାଗରୁ କଳା ଚଷମା କାଢ଼ି ପୁଣି ଆଖିରେ ଲଗାଇଲା । ଅଭିଜିତ ଟେବୁଲ ଉପରେ ତା ହାତ ଉପରେ ହାତ ରଖିଲା । କହିଲା, “ଆଚ୍ଛା ବାବା, ତମେ ଯେତେବେଳ ଯାଏ କହିବ, ରହିବି । ଏଥରକ କହ କଣ ନେବ ?”

ସୁମିତ୍ରା ଆଖିରୁ ଚଷମା ଖୋଲିଲା, କହିଲା “ଚାଲ, ତମେ ଯୋଉ ଷ୍ଟେସନ ପାଖ ରେସ୍ତୋରାଁ କଥା କହୁଥିଲ, ସେଠିକି ଯିବା ।”

“ସେ ତ ଅନେକ ଦୂର ! ପ୍ରଥମରୁ ଯାଇଥିଲେ ହୋଇଥାନ୍ତା । ଆଜି ଏଇଠି ବସିବା ।”

“ନା, ସେଇ ଜାଗାଟା ଭଲ ।” ସୁମିତ୍ରା କହିଲା, “ତମ ପାଖରେ ତ ଗାଡ଼ି ଅଛି; ଚାଲ ।”

“ଦେଖ, ଆଜି...”, ଏତିକି କହି ଅଭିଜିତ ଚୁପ୍ ରହିଲା, କାରଣ ସୁମିତ୍ରା ପୁଣି କଳାଚଷମା ଲଗାଇ ବାହାରକୁ ଅନାଇ ଥିଲା ।

ତାର କଫିର ବିଲ ଦେଇ ଅଭିଜିତ ସୁମିତ୍ରାକୁ ନେଇ ବାହାରକୁ ଆସିଲା । ଗାଡ଼ିରେ ବସି ଷ୍ଟେସନ ଆଡ଼କୁ ଯିବାବେଳେ ଅଭିଜିତ କହିଲା, “ଆଜି ହଠାତ୍ କେମିତି ତମର ମନେ ପଡ଼ିଲା ।”

କଥାର ସିଧା ସଳଖ ଜବାବ ନ ଦେଇ ସୁମିତ୍ରା ପ୍ରହେଳିକା କଲା, "ମୁଁ ତମ ଭଳି ନୁହେଁ ।" ଏହାର କୌଣସି ଅର୍ଥ ନ ଥିଲା । ତେଣୁ ଏ କଥାକୁ ଆଉ କୌଣସି ବ୍ୟାଖ୍ୟା ନ କରି ଅଭିଜିତ କହିଲା, "କିଛି ଜରୁରୀ କଥା ଥିଲା ?" ସୁମିତ୍ରା କହିଲା, "ଆମର ଏତେ ଦିନ ପରେ ଦେଖା ହେଉଚି, ସେଇଟା କଣ ଜରୁରୀ କଥା ନୁହେଁ ?"

ଅଭିଜିତ ଏଥରକ ଚୁପ୍‌ଚାପ୍ ଗାଡ଼ି ଚଳାଇଲା । ଷ୍ଟେସନ ପାଖ ରେଷ୍ଟୁରାଁ ଭିତରେ ପଶି ସେ ଜଣକର ଟେବୁଲ ଖୋଜିଲା, କିନ୍ତୁ ଟେବୁଲ ଖାଲି ନ ଥିଲା । ଯୋଡ଼ି ଗୋଟିଏ ଟେବୁଲ ଖାଲି ଥିଲା, ସେଥିରେ ସୁମିତ୍ରାକୁ ବସାଇ ଅଭିଜିତ କହିଲା, "ତମେ ଗୋଟାଏ ମିନିଟ ବସିଥାଅ, ମୁଁ ଅଫିସକୁ ଫୋନ କରି ଦେଇ ଆସେ ।"

ଅଭିଜିତ ଯେତେବେଳେ ଫେରିଲା, ସୁମିତ୍ରା ଉଦାସ ହୋଇ ବସିଥିଲା । ତାର ହାତକୁ ହାତରେ ନେଇ ଅଭିଜିତ କହିଲା, "କଣ ହୋଇଚି ତମର ?" ସୁମିତ୍ରା ଅଭିଜିତର ଆଖିକୁ ଅନାଇଲା, ତାର ହାତକୁ ହାତରେ ଜୋରରେ ମୁଠାଇ ଧରିଲା, ଆଉ କହିଲା, "ମତେ କିଛି ଭଲ ଲାଗୁନାହିଁ ।"

"କଣ ତମର ଦେହ ଖରାପ ?"

"ତମେ କିଛି ବୁଝି ପାରିବ ନାହିଁ," ସୁମିତ୍ରା ବିରକ୍ତ ହୋଇ କହିଲା । ଟିକିଏ ପରେ କହିଲା, "ତମେ ଅଫିସରୁ କେତେ ସମୟ ପାଇଁ ଛୁଟି ନେଲ ? ଲଞ୍ଚ ଖାଇବ ତ ଅର୍ଡ଼ର ଦିଅ । ମତେ ଭୋକ ନାହିଁ ।"

"କଫି ପିଇବ, ନା ଚା ?"

"ନା, ମୋର କିଛି ଦରକାର ନାହିଁ ।"

"ତେବେ ଆମେ ଏତେ ବାଟ ଆସିଲେ କାହିଁକି ?"

"ତମକୁ ସେଇ କଫି କର୍ନରରେ ଭୟ ଲାଗୁଥିଲା ବୋଲି । କାଲେ କିଏ ଦେଖିଦିବ ତମକୁ !"

ଓ୍ୱେଟର ଆସି ସେମାନଙ୍କ ହାତରେ ମେନୁ କାର୍ଡ ଦେଲା । ତାର ପୃଷ୍ଠା ଓଲଟାଇ ସୁମିତ୍ରା କହିଲା, "ତମେ କେତେ ସମୟ ରହି ପାରିବ, କହ । ମୁଁ ସେଇ ଅନୁସାରେ ଅର୍ଡର ଦେବି ।" ପୁଣି ଏକ ତର୍କ ବିତର୍କ ଭିତରକୁ ନ ପଶିବା ପାଇଁ

ଅଭିଜିତ କହିଲା, "ମୁଁ ଆଉ ଅଫିସକୁ ଫେରିବି ନାହିଁ।" ସୁସ୍ମିତା ଓ୍ୱେଟରକୁ କହିଲା, "ଦୁଇଟା ଆଇସ୍କ୍ରିମ୍।" ଓ୍ୱେଟର ଚାଲିଯିବା ପରେ ଅଭିଜିତ କହିଲା, "ଏତେ-ବେଳେ ଆଇସକ୍ରିମ୍?" ସୁସ୍ମିତା କହିଲା, "ମୁଁ ଯେତେବେଳେ ଅର୍ଡର ଦେଲି, କହିଲ ନାହିଁ କାହିଁକି? ଯଦି ନ ଖାଇବ, ମୁଁ ଓ୍ୱେଟରକୁ ଡାକି ଅର୍ଡର ବଦଳାଇ ଦେଉଛି।" ଅଭିଜିତ କହିଲା, "ଥାଉ।"

ଏଥରକ ଦୁହେଁ ଚୁପ୍‌ଚାପ ବସିଲେ। ଅଭିଜିତ ଜାଣିଥିଲା, ସେ ବର୍ତ୍ତମାନ ଯାହା ବି କହିବ, ସୁସ୍ମିତା ତାର ଏକ ଅଦ୍ଭୁତ ଅର୍ଥ ବାହାର କରି ଏକ ନୂଆ ତର୍କର ସୂତ୍ରପାତ କରିବ। ଆଇସକ୍ରିମ ଆସିବାରୁ ଅଭିଜିତ ତାକୁ ଖାଇବାକୁ ଆରମ୍ଭ କଲା, କିନ୍ତୁ ସୁସ୍ମିତା ତାକୁ ଛୁଇଁଲା ନାହିଁ ଏବଂ ଆଇସକ୍ରିମକୁ ପ୍ଲେଟ ଉପରେ ତରଳି ଯିବାକୁ ଦେଲା। ଅଭିଜିତ ଯେତେବେଳେ 'ତମେ ଖାଇବ ନାହିଁ' ପଚାରିଲା, ତାଙ୍କ ଖାଲି ପ୍ଲେଟକୁ ଚାହିଁ ସୁସ୍ମିତା କହିଲା, "ତମ ପାଇଁ ଆଉ କିଛି ଅର୍ଡର ଦେବି?"

ପୁଣି କିଛି ସମୟ ଚୁପ୍ ଚାପ୍ ବସିବା ପରେ ଅଭିଜିତ ଘଣ୍ଟା ଦେଖିଲା। ସୁସ୍ମିତା କହିଲା, "ତମର ଅଫିସ ସମୟ ହୋଇଗଲା ବୋଧହୁଏ?" ଅଭିଜିତ କହିଲା, "ନା, ମୁଁ ଆଉ ଅଫିସ ଯିବି ନାହିଁ। ତମର କଣ ହୋଇଛି, କୁହ।"

ସୁସ୍ମିତା ତା ଉପରେ ରାଗି ଯାଇ କହିଲା, "ମୋର କିଛି ହୋଇ ନାହିଁ। ମୋର କିଛି ହେବା ନ ହେବାରେ ତମର କଣ? କେବେ ଖବର ନେଇଥିଲ? ତମର ଆଜି ମୁଡ୍ ଠିକ୍ ନାହିଁ। ମୋର ତମକୁ ଏଠିକି ଆସିବା ପାଇଁ ବାଧ୍ୟ କରିବା ଉଚିତ ନ ଥିଲା। ଚାଲ, ଯିବା ଏଥରକ। ଅଭିଜିତର ଅନୁରୋଧକୁ ନ ମାନି ସୁସ୍ମିତା ଓ୍ୱେଟରକୁ ବିଲ ଆଣିବାକୁ କହିଲା ଓ ଜିଦ କରି ନିଜେ ପଇସା ଦେଇ ଦେଲା। ବାହାରକୁ ଆସି ଅଭିଜିତ କହିଲା, "ତମେ କୋଉଠିକି ଯିବ, କହ। ମୁଁ ଛାଡ଼ି ଦେବି।" ସୁସ୍ମିତା କହିଲା, "ନା, ମୁଁ ଟ୍ୟାକ୍ସି ନେଇ ଯିବି। ତମେ ତମର ଅଫିସକୁ ଯାଅ। ଅନେକ ଜରୁରୀ କାମ ଥିବ ତମର।"

ଅଭିଜିତ ଶେଷଥର ପାଇଁ ଅନୁନୟ କରି କହିଲା, "ସୁସ୍ମିତା ଦେଖ, ମୁଁ ଟୁରରେ ଚାଲିଯିବି କିଛିଦିନ ପାଇଁ। କଣ କହିବାର ଥିଲା କୁହ।" ସୁସ୍ମିତା ତା କଥାକୁ ଅଶୁଣା କରି ଦେଇ ଟ୍ୟାକ୍ସି ଡାକିଲା ଏବଂ ଟ୍ୟାକ୍ସିରେ ବସୁ ବସୁ କହିଲା, "ତମର ଯେତେବେଳେ ମୋ ସାଙ୍ଗରେ କଥାବାର୍ତ୍ତା କରିବା ପାଇଁ ଇଚ୍ଛା ଓ ସମୟ ହବ, ମତେ ଫୋନ କରିବ।"

ଟିନା ଘରକୁ ଫେରିଲା ଦୁଇଟା ବେଳେ । ସୁମିତା ମୁହଁକୁ ସାମାନ୍ୟ ହସ ଆଣି ତାକୁ ସ୍କୁଲରେ କଣ ସବୁ ହେଲା ପଚାରିଲା । ଟିନା ଏକ ବିସ୍ତୃତ ବିବରଣୀ ଦେବା ଆରମ୍ଭ କରିବାରୁ ସୁମିତା କହିଲା, "ଆଉ, ଆଉ । ଖାଇ ସାରିଲେ ବାକି ସବୁ କଥା ଶୁଣିବି ।" ନିଜେ ଖାଉ ଖାଉ ସୁମିତା ଟିନାକୁ ଖୁଆଇଲା ଏବଂ ଟାଇସାରି ଶୋଇବା ଘରକୁ ଆସିଲା । ତା ପଛେ ପଛେ ଟିନା ଆସି ତାର ବହିଧରି ଛିଡ଼ା ହେଲା, କହିଲା, "ମତେ ଏ ଗପଟା କହ ।" ସୁମିତା ସାମାନ୍ୟ ବିରକ୍ତିର ସହ କହିଲା, "ମୋର ଏବେ ଦେହ ଭଲ ନାହିଁ । ଶୋଇ ସାରି ଉଠିଲେ କହିବି ।" ତା କଥା ଶୁଣି ଅତ୍ୟନ୍ତ ବିମୀତ ଭଳି ଟିନା ଚାଲି ଯାଉଥିଲା । କି ଅଦ୍‌ଭୁତ ପିଲା, ସୁମିତା ଭାବିଲା, ସବୁ କଥା ଏମିତି ଚୁପ ଚାପ ମାନି ଯାଉଛି ! ଜିଦ୍ କରି ତ କହି ପାରିଥାନ୍ତା, ନା, ମୁଁ ଗପ ଶୁଣିବି । ଏବେ, ଏଇ ମୁହୂର୍ତ୍ତରେ ।

ସୁମିତା ଟିନାକୁ ପଛରୁ ଡାକିଲା, କହିଲା, "ଆଚ୍ଛା, ହଉ । ମୁଁ ତତେ ଏବେ ଗପଟା କହୁଛି ।" ଟିନା ଆସିବାରୁ ସୁମିତା ତାର ସ୍କୁଲ ପୋଷାକ ବଦଳାଇ ଅନ୍ୟ ଜାମା ପିନ୍ଧାଇଲା ଆଉ ବିଛଣା ଉପରେ ଶୋଇ ଶୋଇ ବହିରୁ ଗୋଟି ପଢ଼ି ତାକୁ ଶୁଣାଇଲା । ଟିନା କ୍ଲାନ୍ତ ଥିଲା ଏବଂ ଅଧା ସେପରୁ ଶୋଇବାକୁ ଆରମ୍ଭ କଲା । ତାକୁ ଉଠାଇ ସୁମିତା କହିଲା, "ଯା, ତୋ ଖଟରେ ଯା ଶୋଇବୁ ।"

ସୁମିତା ସେଇ ବହିଟା ଖୋଜିଲା ଯାହାକୁ ସେ କିଛି ଦିନ ତଳେ ଅଧା ପଢ଼ି ରଖି ଦେଇଥିଲା । କିନ୍ତୁ ବହି ମିଳିଲା ନାହିଁ । ସେ ଝରକାର ପର୍ଦ୍ଦା ଟାଣି ଦେଲା ଏବଂ ବିଛଣା ଉପରେ ଆଖିବୁଜି ଶୋଇ ନିଜ ଉପରେ ବିରକ୍ତ ହେଲା, କୋଉଠି ସେ ବହିଟା ରଖି ଦେଇଛି ବୋଲି । ପାଖ ଖଟ ଉପରେ ଟିନାର ନିଦରେ ଶୋଇସିବାର ଦୀର୍ଘନିଃଶ୍ୱାସ ଶୁଣୁ ଶୁଣୁ ସୁମିତା ନିଜେ କେତେବେଳେ ଶୋଇଗଲା, ଜାଣି ପାରିଲା ନାହିଁ ।

ତାର ଯେତେବେଳେ ନିଦ ଭାଙ୍ଗିଲା, ଘର ଭିତର ଅନ୍ଧାର ଥିଲା । ସୁମିତା ଯାଇ ଝରକାର ପର୍ଦ୍ଦା ଖୋଲି ବାହାରକୁ ଅନାଇଲା । ଶୀତ ଦିନର ଗୋଧୂଳି ଆକାଶ ଅତ୍ୟନ୍ତ ମ୍ଳାନ ଓ ମଳିନ ଦେଖା ଯାଉଥିଲା । ସୁମିତା ବାହାରୁ ଆଖି ଫେରାଇ ଘର ଭିତରକୁ ଅନାଇଲା । ଟିନା ଉଠି ଚାଲି ଯାଇଥିଲା ଏବଂ କୋଠରୀ ଶୂନଶାନ ଥିଲା । ସୁମିତା ଅନୁଭବ କଲା ଯେପରି ଏକ ଉଦାସୀ ବିଷଣ୍ଣତାର ଆସ୍ତରଣ ଧୀରେ ଧୀରେ ତାର କୋଠରୀର ସମସ୍ତ ଜିନଷକୁ ଆଚ୍ଛନ୍ନ କରି ଯାଉଛି । ଦୀର୍ଘ ନିଃଶ୍ୱାସ ନେଇ ସୁମିତା ମନକୁ ମନ କହିଲା, ନା, କିଛି ବି ଭଲ ଲାଗୁ ନାହିଁ ।

## ନିଜତ୍ୱ

ଊର୍ମିଳା ସୁଶ୍ରୀ, ଉଚ୍ଚ ଶିକ୍ଷିତା, ବୁଦ୍ଧିମତୀ ଓ ଅଧ୍ୟବସାୟୀ ଥିଲା । କିନ୍ତୁ ଏ ସବୁ ଗୁଣମାନ ତାକୁ ଉପଯୁକ୍ତ ଚାକିରି ପାଇବାରେ କୌଣସି ସହାୟତା କଲେ ନାହିଁ । ଏମ.ଏ. ଓ ଏମ୍. ଫିଲ୍ କରିସାରିବା ପରେ ଅନ୍ୟ କିଛି କାମ ମିଳି ନ ଥିବାରୁ ସେ ପି.ଏଚ୍.ଡ଼ି. ପାଇଁ ପ୍ରସ୍ତୁତ କରୁଥିଲା ଏବଂ ଚାକିରି ଖୋଜୁଥିଲା । ସେ ନାରୀମାନଙ୍କ ପାଇଁ ସ୍ୱାତନ୍ତ୍ର୍ୟ ଓ ସମାନତା ତଥା ଉଇମେନ୍‌ସ ଲିବ୍‌ରେ ବିଶ୍ୱାସ କରୁଥିଲା ଏବଂ ସ୍ଥିର କରିଥିଲା ଯେ ନିଜର ବିଦ୍ୟା ବୁଦ୍ଧି ବଳରେ ଚାକିରି କରି ପୁରୁଷମାନଙ୍କ ସହିତ ସମକକ୍ଷ ହେବ । ଯଦିଓ ତାର ଘରେ ଏଥିପାଇଁ କୌଣସି ବାଧବାଧକତା ନ ଥିଲା ଏବଂ ତାକୁ ବାହା କରିବାକୁ ଦେଇଥିଲେ ତାର ବାପା ମା ଖୁସି ହୋଇଥାନ୍ତେ, ସେ ନିଜର ସ୍ୱାଧୀନ ଭାବରେ ଜୀବନ କଟାଇବାର ନିଷ୍ପତ୍ତିରେ ଅଟଳ ଥିଲା ।

ନିଜର ଭବିଷ୍ୟତର ଯୋଜନାମାନଙ୍କରେ ଊର୍ମିଳା ଯେଉଁ ବିଷୟକୁ ହିସାବକୁ ନେଇ ନ ଥିଲା, ସେଇଟି ଥିଲା ସାମାଜିକ ଅବସ୍ଥା । କଲେଜର ଅନ୍ତଃକୋଣସ୍ଥ କ୍ଲାସ୍‌ରୁମ୍‌ରେ ବିତାଇବା ବେଳେ ସମସ୍ୟା ସବୁ ସିଧାସଳଖ ଓ କଳାଧଳାରେ ପର୍ଯ୍ୟବସିତ ଥିଲା; ପ୍ରତିଟି ପ୍ରଶ୍ନର ଦୁଇଟି ଦିଗ ଥିଲା ଏବଂ ଊର୍ମିଳା ପାଇଁ କୌଣସି ଦ୍ୱନ୍ଦ୍ୱ ନ ଥିଲା ସଠିକ ରାସ୍ତା ଖୋଜି ନେବାରେ । କିନ୍ତୁ ଉଇମେନ୍‌ସ କଲେଜର ପାଚେରୀ, ଲେଡ଼ିଜ ସ୍ପେଶାଲ ବସ୍ ଓ ସହପାଠିନୀ ବାନ୍ଧବୀମାନଙ୍କ ବାହାରେ ଯେଉଁ ପୃଥିବୀଟି ଥିଲା ତା ଊର୍ମିଳାର ସଂପୂର୍ଣ୍ଣ ଅପରିଚିତ ଥିଲା । ଏଇ ନୂତନ ପୃଥିବୀ ସହିତ ଊର୍ମିଳାର ପ୍ରଥମ ପରିଚୟ ହେଲା ସେ ଯେତେବେଳେ ଚାକିରି ଖୋଜିବା ପାଇଁ ବାହାରିଲା ।

ସର୍ବସାଧାରଣଙ୍କର ବସ୍ ତାଙ୍କର କଲେଜକୁ ଯାଉଥିବା ଲେଡ଼ିଜ୍ ସ୍ପେଶାଲ ଭଳି ଆଦୌ ନ ଥିଲା । ତା ଭିତରକୁ ପଶିବାପାଇଁ କୁସ୍ତି କସରତ କରିବାକୁ ପଡ଼ୁଥିଲା ଏବଂ ଏ ବସ୍‌ମାନଙ୍କରେ ଯାତ୍ରୀ ଓ କର୍ମଚାରୀମାନଙ୍କର ବ୍ୟବହାର ଶାଳୀନତା ବହିର୍ଭୂତ ଥିଲା । ବସ୍‌ରେ ଝିଅମାନଙ୍କ ପ୍ରତି ଅଶ୍ଳୀଳ ଆଚରଣ ବିଷୟରେ ଊର୍ମିଳା ଖବରକାଗଜରେ ପଢ଼ୁଥିଲା, କିନ୍ତୁ ବର୍ତ୍ତମାନ ସେ ଏହାର ଅନୁଭବ କରୁଥିଲା ନିଜେ

ପ୍ରଥମ ଥର ପାଇଁ । ବସ୍ ଭିତରକୁ ପଶିବାବେଳେ ଅଥବା ବସ୍ ଭିତରୁ ଭିଡ଼ରେ ଛୁଡ଼ା ହୋଇଥିବା ବେଳେ କେହି କେହି ତାର ଗ୍ରୀବରେ ହାତ ଲଗାଇ ଦେଉଥିଲେ । ପ୍ରଥମ ଥର ଉର୍ମିଳାକୁ ଏ ବ୍ୟବହାର ଅତି ଘୃଣା ଓ ଅପମାନଜନକ ମନେ ହୋଇଥିଲା ଏବଂ ସେ ହତଚକିତ ହୋଇ ଯାଇଥିଲା । ଗୋଟାଏ ମୁହୂର୍ତ୍ତ ପାଇଁ ସେ ଭାବିଲା ସେ ଚିତ୍କାର କରି ଏଇ ଲୋକଟିର ମୁହଁରେ ଚପେଟାଘାତ କରିବ । କିନ୍ତୁ ସାମାନ୍ୟ ଚିନ୍ତା କରି ସେ ଦେଖିଲା ଯେ ଏଇଭଳି ଗୋଟାଏ ଶସ୍ତା ତୃତୀୟ ଶ୍ରେଣୀର ଇତର ଲୋକ ପାଇଁ ସେ ନିଜର ସମୟ ଆଉ ଶ୍ରମ ଅପବ୍ୟୟ କରି ନାଟକୀୟ ପରିସ୍ଥିତିର ସୃଷ୍ଟି କରିବ ନାହିଁ । କିଛିଦିନ ବସ୍‌ରେ ଯିବା ଆସିବା ପରେ ସେ ଏକଥା ମଧ୍ୟ ଜାଣିଲା ଯେ ସ୍ତ୍ରୀଲୋକଙ୍କ ପାଇଁ ବସ୍‌ରେ ଯାତାୟତ କରିବା ଏହିଭଳି ଅନୁଭୂତିସାପେକ୍ଷ, କାରଣ ସାମାନ୍ୟ ସୁଯୋଗ ପାଇଲେ କିଛି ଲୋକ ସ୍ତ୍ରୀଲୋକମାନଙ୍କର ଗ୍ରୀବ, ଜଙ୍ଘ ଓ ଦେହକୁ ଆଘାତ କରୁଥିଲେ । ଏ କଥାରେ ବର୍ତ୍ତମାନ ଉର୍ମିଳା ଆଉ ଆତଙ୍କିତ, ବିରକ୍ତ କିମ୍ବା ଅପମାନିତ ବୋଧ କରୁ ନ ଥିଲା । କେବଳ ମନଭିତରେ ସେଇ ଅଭଦ୍ର ଲୋକ ଉଦ୍ଦେଶ୍ୟରେ କହୁଥିଲା, ବାଷ୍ଟାର୍ଡ ।

ଏହି ଅଶାଳୀନତା କେବଳ ବସ୍ ଭିତରେ ହିଁ ସୀମିତ ନ ଥିଲା । ରାସ୍ତାଘାଟ, ଦୋକାନ ବଜାର, ଅଫିସ୍, ହୋଟେଲ, ରେଲ ଷ୍ଟେସନ ସବୁଆଡ଼େ ପରିବ୍ୟାପ୍ତ ଥିଲେ ଏଇ ଜାରଜମାନେ । ଯେପରିକି ଜଣେ ସ୍ତ୍ରୀ ଲୋକ ପକ୍ଷରେ ସମ୍ମାନର ସହିତ ଚଳପ୍ରଚଳ କରିବା ଏ ଦେଶରେ ଅସମ୍ଭବ ! ଉର୍ମିଳା କ୍ରମଶଃ ସ୍ୱୀକାର କରିନେଲା ଯେ ରାସ୍ତାରେ ଯିବାବେଳେ ନର୍ଦ୍ଦମାର ରୋମିଓମାନେ ଅଶ୍ଳୀଳ ଇଙ୍ଗିତ କରିବେ, ଦୋକାନରେ ଲୋକେ ଅଯଥା ଅନ୍ତରଙ୍ଗ ହେବାକୁ ଚେଷ୍ଟା କରିବେ ଏବଂ ପଡ଼ୋଶୀ ବୟସ୍କ ଭଦ୍ରବ୍ୟକ୍ତି ବ୍ୟଙ୍ଗ ପରିହାସ କରିବାକୁ ନିଜର ଅଧିକାର ମନେ କରିବେ । ଉର୍ମିଳା କିନ୍ତୁ ହାର ମାନିବାକୁ ପ୍ରସ୍ତୁତ ନ ଥିଲା । ସେ ନିଜକୁ କହିଲା, ସେ କେବେ-ହେଲେ ନିଜର ନିଷ୍ପତ୍ତିରୁ ଓହ୍ଲାଇ ଯିବ ନାହିଁ ଏବଂ ଏଇ ପୁରୁଷପ୍ରଧାନ ସମାଜରେ ନିଜର ସ୍ଥାନ ନିର୍ଦ୍ଧାରିତ କରିବ ହିଁ କରିବ ।

ଚାକିରି ପାଇଁ ଆଉ କାହାରି ସହାୟତା ନ ନେଇ ସେ ନିଜେ ଖବରକାଗଜରୁ ବିଜ୍ଞପ୍ତି ମାନ ଦେଖି ବିଭିନ୍ନ ସ୍ଥାନକୁ ଦରଖାସ୍ତ ଦେଲା । ତାର ପ୍ରଥମ ଇଣ୍ଟରଭିଉ ଥିଲା କୌଣସି ଏକ ଏକ୍‌ସପୋର୍ଟ ହାଉସର ଚାକିରି ପାଇଁ । ଇଣ୍ଟରଭିଉର ଜାଗା ଥିଲା କମ୍ପାନୀ ଡାଇରେକ୍ଟରଙ୍କର ବ୍ୟକ୍ତିଗତ ଘର, ଯାହାର ବାହାର କୋଠରୀରେ ତା ଭଳି ଆଉ କେତେଜଣ ଝିଅ ଅପେକ୍ଷା କରୁଥିଲେ । ଡାକରା ପାଇ ସେ ଯେତେବେଳେ ଭିତରକୁ ଗଲା, ଦେଖିଲା ସେଇଟି ଗୋଟିଏ ସୁଦୃଶ୍ୟ ଡ୍ରଇଁରୁମ୍ ମାତ୍ର । ଏଇ କୋଠରୀର ସୋଫା ଉପରେ ତିନିଜଣ ଭଦ୍ରବ୍ୟକ୍ତି ବସିଥିଲେ, ଯେଉଁମାନଙ୍କର ଚେହେରା ସହିତ

ହିନ୍ଦୀ ଫିଲ୍ମର ଖଳନାୟକଙ୍କର ଅନେକ ସାମଞ୍ଜସ୍ୟ ଥିଲା । ଏହି ଦୃଶ୍ୟକୁ ସଂପୂର୍ଣ୍ଣ କରିବା ପାଇଁ ସେମାନଙ୍କ ସାମନାରେ ମଦବୋତଲ, ଗ୍ଲାସ ଓ ସୋଡ଼ା ରଖା ହୋଇଥିଲା ଏବଂ ସେମାନେ ହାତରେ ଗ୍ଲାସ ଧରି ନିଜ ନିଜ ଭିତରେ କୌଣସି ରୋଚକ ଆଲୋଚନାରେ ବ୍ୟସ୍ତ ଥିଲେ । ଉର୍ମିଳା ବସିବା କ୍ଷଣି ଏଇ ଦଳର ସର୍ଦ୍ଦାର ଭଳି ଦେଖା ଯାଉଥିବା ଲୋକଟି ତା ହାତକୁ ଗୋଟିଏ ଗ୍ଲାସ ବଢ଼ାଇଦେଇ କହିଲା, “ପ୍ଲିଜ...” ।

ଉର୍ମିଳା ଏ ପରିସ୍ଥିତିରେ ସାମାନ୍ୟ ହତଚକିତ ହେଲା ଏବଂ ପାଖ କୋଠରୀରେ ଆଉ କେତେଜଣ ଝିଅ ବସି ନ ଥିଲେ ସେ ବୋଧହୁଏ ଆତଙ୍କିତ ବୋଧ କରିଥାନ୍ତା । ଯାହାହେଉ, ସେ ବର୍ତ୍ତମାନ ନିଶ୍ଚିତ କରିନେଲା ଯେ ସେ ଏଇ କମ୍ପାନୀରେ ଚାକିରି କରିବାକୁ ଯାଉନାହିଁ । ତଥାପି ସେ ତାର ଇଣ୍ଟରଭିଉକୁ କେମିତି ହେଲେ ଶୀଘ୍ର ନିର୍ବାହ କରିବାକୁ ଚାହୁଁଥିଲା । ସେ କହିଲା, “ନା, ମୁଁ ପିଏ ନାହିଁ ।”

ସର୍ଦ୍ଦାର କହିଲା, “ଦେଖନ୍ତୁ ଉର୍ମିଳା ଦେବୀ, ଆମର ହେଲା ଏକ୍ସପୋର୍ଟ ବିଜିନେସ । ସମୟ ଅସମୟରେ ଆମର ଫରେନ ବାୟର୍ସ ଆସନ୍ତି । ତା ଛଡ଼ା ଏଠାରେ ସରକାରୀ ଅଫିସରଙ୍କ ସାଙ୍ଗରେ ଆମର ସବୁବେଳେ କାମ । ସେମାନଙ୍କୁ ଏଣ୍ଟରଟେନ ତ କରିବାକୁ ହେବ ! ଆମେ ଯେଉଁ ପୋଷ୍ଟ ପାଇଁ ବିଜ୍ଞପ୍ତି ଦେଇଥିଲୁ, ସେ ଚାକିରିର ପ୍ରଧାନ କାମ ହେଲା ଏଇ ଅତିଥିମାନଙ୍କର ଯତ୍ନ କରିବା......।”

ଉର୍ମିଳା କହିଲା, “ଧନ୍ୟବାଦ । ମୁଁ ଏ କାମ କରି ପାରିବି ନାହିଁ ।” ସର୍ଦ୍ଦାର କହିଲା, “ଭାବି ଦେଖନ୍ତୁ । ଆମର ଦରମା ଭଲ । ତା ଛଡ଼ା......।” ଉର୍ମିଳା କହିଲା, “ନା, ମୋର ଏ ଚାକିରି ଦରକାର ନାହିଁ ।” ସର୍ଦ୍ଦାର ଗ୍ଲାସରେ ମଦ ଢାଳୁ ଢାଳୁ କହିଲା, “ଆପଣଙ୍କର ଯେମିତି ଇଚ୍ଛା । କଣ ଚା' କି କଫି କିଛି ପିଇବେ ?” ଉର୍ମିଳା କହିଲା, “ନା, ଧନ୍ୟବାଦ ।”

କୋଠରୀରୁ ବାହାରି ସେ ଅନ୍ୟ ଝିଅମାନଙ୍କ ପାଖରେ ଆସି କିଛି ସମୟ ବସିଲା । ସେ ଜାଣିଥିଲା ତା ଅପେକ୍ଷା କାହାର ଚାକିରିର ପ୍ରୟୋଜନ ବେଶୀ ଥିବ ଏବଂ କେହି ନା କେହି ଚାକିରିଟି ଗ୍ରହଣ କରିବ । ଉର୍ମିଳା ପୁଣି ଭାବିଲା, ହୁଏ ତ ସେଇ ଲୋକଟି ଠିକ୍ କହୁଥିଲା ଚାକିରି ବିଷୟରେ । ଏକ୍ସପୋର୍ଟ ଧନ୍ଦାରେ ନିଶ୍ଚୟ ଲୋକମାନଙ୍କୁ ଆପ୍ୟାୟିତ କରିବାକୁ ପଡ଼ୁଥିବ ଏବଂ ହୋଷ୍ଟେସ୍‌ମାନଙ୍କର ଆବଶ୍ୟକତା ଥିବ । ଉର୍ମିଳା ନିଜକୁ ସେଇ ତିନିଜଣ ଲୋକଙ୍କ ପାଖରେ ବସି ଏଇ କାମ ପାଇଁ ଗୋଟିଏ ଝିଅକୁ ବାଛୁଥିବାର କଳ୍ପନା କଲା ଏବଂ ସେଠାରୁ ବାହାରି ଆସିବାବେଳେ କୋଣରେ ବସିଥିବା ଲାଲ ସ୍ୱେଟର ପିନ୍ଧା ସୁନ୍ଦରୀ ଝିଅଟିକୁ ମନେ ମନେ ଏଇ କାମ ପାଇଁ ପସନ୍ଦ କଲା ।

ଥିବା ଶୁଣିଚୁ ?' କନିଷ୍ଠ ତଥାପି କିଛି ନ କହିବାରୁ ଟିକିଏ ପରେ ରବି କହିଲା, 'ସେଠିକି ଯିବା ନ ହେଲା ନ ହେଲା; ଏତେ ଚିନ୍ତା କରିବାର କି ଦରକାର ? ଯଦି ସେ ଭିତରେ କେହି ଥାନ୍ତା ବି, ପୁଲିସ ନ ହେଲେ ଚିହ୍ନା ଲୋକ ହାବୁଡ଼ରେ ପଡ଼ି ପୁଣି ହଇରାଣ ! କିଏ ଏତେ କଥାରେ ପଶିଥାନ୍ତା ?'

କନିଷ୍ଠ ତଥାପି ଜବାବ ଦେଲା ନାହିଁ । ରବି କହିଲା, 'କଣ ଭାବୁଚୁ ? କଣ ପୁଣି ଯିବା ?' କନିଷ୍ଠ ଏଥର କହିଲା, 'ନା, ମୋର ମୁଣ୍ଡ ବିଥଉଚି ।' ପକେଟରୁ ମୁଣ୍ଡ ବିଥା ଔଷଧ ବାହାର କରି ତା ଆଡ଼କୁ ବଢ଼ାଇ ଦଉ ଦଉ ରବି କହିଲା, 'ଯାହା ହଉ ଏଇଟା ସାଙ୍ଗେ ସାଙ୍ଗେ କାମରେ ଲାଗିଲା !' ତଥାପି କନିଷ୍ଠର ମିଜାଜ ଠିକ ହୋଇ ନଥିବାର ଦେଖି ଟିକିଏ ରହି ରବି ତାକୁ କହିଲା, 'ହଉ ଚାଲ, ଆଜି ସେଇ କେବଳ ବୟସ୍କଙ୍କ ପାଇଁ ଫିଲ୍ମଟା ଅନ୍ତତଃ ଦେଖି ନବା ।'

# ବୈଷମ୍ୟ

ପଣ୍ଡିତେ ଆଜିକାଲି ଆଉ ପୁଅ ସହିତ ସିଧା ସଳଖ କଥାବାର୍ତ୍ତା କରୁନଥିଲେ । ତେଣୁ ସ୍ତ୍ରୀକୁ ପଚାରିଲେ, "କ'ଣ ସେ କୁଳାଙ୍ଗାର ନିଦରୁ ଉଠିଲାଣି କି ନାହିଁ ?" ନିତ୍ୟାନନ୍ଦର ଯଦିଓ ନିଦ ଭାଙ୍ଗି ସାରିଥିଲା, ସେ ଏ ପର୍ଯ୍ୟନ୍ତ ବିଛଣାରେ ପଡ଼ି ରହିଥିଲା । ସେ ବାପାଙ୍କର ଏ କଥାର କ'ଣ ଗୋଟାଏ କଠୋର ଜବାବ ଦେବ ବୋଲି ଭାବିଲା, କିନ୍ତୁ ଶେଷକୁ ଚୁପ୍ ରହିଲା । ପଣ୍ଡିତଙ୍କର ସ୍ତ୍ରୀ କହିଲେ, "କାହିଁକି ସକାଳୁ ସେ ପିଲାଟା ସାଙ୍ଗରେ ଲାଗିଚ ? ଆଜି ଚାକିରିରେ ଜଏନ କରିବ । ଟିକିଏ ଶାନ୍ତିରେ ଯାଉ । ବରଂ ତା' ପାଇଁ ଟିକିଏ ପୂଜା କରି ଦିଅନ୍ତ ନାହିଁ ?"

ଯଦିଓ ବର୍ତ୍ତମାନ ସକାଳ ଆଠଟା ବାଜିଥିଲା, ପଣ୍ଡିତେ ଏଥର ପୁଅକୁ ଶୁଣାଇ କହିଲେ, "ଦିନ ଦଶଟା ହେଲାଣି, ଅଫିସରେ ଠିକ୍ ସମୟରେ ନପହଞ୍ଚିଲେ କିଏ ଚାକିରି ଦେବ ? ଶଳା ଦଶ ଲୋକଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ ଶେଷକୁ ଚାକିରି ମିଳିଲା, କିନ୍ତୁ ଏତେବେଳକୁ କ'ଣ ନା ଲାଟ ସାହେବ ଦିନ ଦଶଟା ଯାଏ ବିଛଣାରେ ଶୋଇଛନ୍ତି ।" ପଣ୍ଡିତଙ୍କ ସ୍ତ୍ରୀ କହିଲେ "ହଉ, ତମେ ଆଉ ପାଟି କରନା, ମୁଁ ତାକୁ ଉଠାଇ ଦେଉଚି । ତମେ ଯାଅ ପୂଜା କର । ଯାହା ହଉ, ଚାକିରିର ପ୍ରଥମ ଦିନ ତ !"

ପଣ୍ଡିତଙ୍କ ରାଗ ତଥାପି ଶାନ୍ତ ପଡ଼ିଲା ନାହିଁ; କହିଲେ, "ଦେଖ କେତେଦିନ ଚାକିରି ରହୁଚି । ଏ ତ ଘରେ ବସି ରହି ଖାଇବା କଥା ନୁହେଁ ! ସରକାରୀ ମାମଲା । ଏ ଚାକିରି ଗଲେ ଆଉ ଜୀବନ ସାରା ଚାକିରି ନ ମିଳେ ।" ପଣ୍ଡିତଙ୍କ ସ୍ତ୍ରୀ ରୋଷେଇ ଘରକୁ ଯାଉ ଯାଉ କହିଲେ, "ସବୁଦିନେ କ'ଣ ଏଇ ଚାକିରି କରୁଥିବ ? ପୁଣି ତ କ'ଣ ଭଲ ଚାକିରି ମିଳିବ ।"

ଏ କଥା ଶୁଣି ପଣ୍ଡିତେ ରାଗରେ ଫାଟି ପଡ଼ିଲେ କହିଲେ, "ଏଇ ବିଦ୍ୟା ବୁଦ୍ଧିରେ ଆଉ କ'ଣ କଲେକ୍ଟର ଚାକିରି ପାଇବ ? ମାଟ୍ରିକ ପାସ କଲା ଦି' ଥରରେ । ଶେଷକୁ ଇଣ୍ଟରମିଡ଼ିଏଟ ପାସ କରିପାରିଲା ନାହିଁ । ଆଉ କି ଚାକିରି ପାଆନ୍ତା ? ଏଇ

ଘୁଙ୍କୁଙ୍କୁ ସମ୍ଭାଳି ରଖି ପାରିଲେ ହେଲା ।" ଏଥର କନ୍ୟ ପଣ୍ଡିତେ ବାରମ୍ବାର ଗୋଟାଏ କଣରେ ରହିଥିବା ଫଟୋ ଆଡ଼କୁ ପୂଜା କରିବାକୁ ଗଲେ । ଆଜି କିନ୍ତୁ ତାଙ୍କର ପୂଜାରେ ମନ ଲାଗିଲା ନାହିଁ । ଆଖି ବୁଜି ବସି ସେ ନିତ୍ୟାନନ୍ଦ କଥା ଭାବିଲେ । ନିତ୍ୟାନନ୍ଦର ପିଲାଦିନ କଥା ତାଙ୍କର ମନେ ପଡ଼ିଲା । ସେତେବେଳକୁ ତାଙ୍କର ଆଉ ପିଲା ଝିଲା ହୋଇ ନଥିଲେ । ସ୍ତ୍ରୀ ସେତେବେଳକୁ ସୁନ୍ଦର ଓ ସ୍ୱାସ୍ଥ୍ୟବତୀ ଥିଲେ ଏବଂ କଥାକଥାକେ ଏପରି ଚଡ଼ ଚଡ଼ ହେଉ ନଥିଲେ । ସେ ସମୟଟି ପଣ୍ଡିତଙ୍କୁ ଅଶେଷ ସୁଖଶାନ୍ତି ଓ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ମନେ ହେଲା । ସ୍କୁଲର ଦରମା ଯଦିଓ କମ ଥିଲା, ଦରଦାମ ଏତେ ବେଶି ନଥିଲା ଆଉ ତାଙ୍କର ସଂସାର ବି ଶ୍ରେଷ୍ଠ ଥିଲା ।

ପଣ୍ଡିତଙ୍କର ବର୍ତ୍ତମାନ ପୂର୍ବୁଣା ଦିନର ଶ୍ରେଷ୍ଠ ଶ୍ରେଷ୍ଠ ମୁହୂର୍ତ୍ତମାନ ମନେ ପଡ଼ିଲା । ଯୋଉଦିନ ପ୍ରଥମ କରି ନିତ୍ୟାନନ୍ଦ ସ୍କୁଲକୁ ଗଲା । କି କାନ୍ଦ ତା'ର ! କେତେ ଭଲ ପାଠ ନପଢ଼ୁ ଥିଲା ସେ ପିଲା ଦିନେ ? ତାଙ୍କ ସାଙ୍ଗରେ ପୂରା ସମୟ କଟାଉଥିଲା ନିତ୍ୟାନନ୍ଦ । ସବୁବେଳେ ତାଙ୍କ ପଛେ ପଛେ ଯାଉଥିଲା । ତାଙ୍କ ପାଖରୁ ସ୍କୁଲର ପାଠ ବୁଝୁଥିଲା । ତାଙ୍କର ସ୍କୁଲରୁ ଫେରି ଆସିବାକୁ ଅନାଇ ବସୁଥିଲା । ବଳୀତ ଭଲ ତାଙ୍କ ସାଙ୍ଗରେ ବଜାର ଯାଉଥିଲା । ସ୍କୁଲରୁ ଫେରି ଆସି ତାଙ୍କୁ ତା'ର ସାଙ୍ଗମାନଙ୍କ କଥା କହୁଥିଲା ।

ସେଇ ଉପର କ୍ଲାସର ସାଙ୍ଗମାନେ ହିଁ ତାକୁ ଖରାପ କରିଦେଲେ, ପଣ୍ଡିତେ ମନେ ମନେ ଭାବିଲେ । ସେତେବେଳକୁ ପରିବାର ବଢ଼ି ଯାଇଥିଲା, ଆଉରି ଦୁଇଟି ପୁଅ ଝିଅଙ୍କର ଜନ୍ମରେ । ଚଢ଼ା ଦରଦାମକୁ ନେଇ ଆଉ ସଂସାର ଚଳାଇ ହେଲା ନାହିଁ । ସେ ଏଥର ବିରକ୍ତ ହେବାକୁ ଆରମ୍ଭ କଲେ । ତାଙ୍କର ସ୍ତ୍ରୀ, ଯାହାଙ୍କ ମୁହଁରୁ କଥା ବାହାରୁ ନଥିଲା, ତାଙ୍କୁ କଥା କଥାକେ ଜବାବ ଦେଲେ । ଏଇ ସମୟରୁ ହିଁ ନିତ୍ୟାନନ୍ଦର ମତଗତ ଖରାପ ହେଲା । ଖରାପ ସାଙ୍ଗଙ୍କ ସାଙ୍ଗରେ ପଡ଼ି ସେ ଡେରିରେ ଘରକୁ ଫେରିଲା । ଦିନେ ଦିନେ ସ୍କୁଲକୁ ନ ଯାଇ ଏପାଖ ସେପାଖ ବୁଲିଲା । ଶେଷରେ ମାଟ୍ରିକ ପରୀକ୍ଷାରେ ଫେଲ ହେଲା ।

ପରୀକ୍ଷାରେ ଫେଲ ହୋଇ ବି ନିତ୍ୟାନନ୍ଦ ଅନୁତପ୍ତ ନଥିଲା । ପଣ୍ଡିତେ ଯେତେବେଳେ ରାଗରେ ତାକୁ ଡାକିଲେ, ନିତ୍ୟାନନ୍ଦ କହିଲା, "ଆଉ କ'ଣ ହୋଇଥାନ୍ତା ? ମୋର ତ ପଢ଼ା ବନ୍ଧ ନଥିଲା ।" ଏ କଥା ଶୁଣି ପଣ୍ଡିତଙ୍କ ରାଗ ଚରମକୁ ଉଠିଲା । କହିଲେ, "କୋଉ ବନ୍ଧ ? ମତେ କେବେ କହିଥିଲୁ ?" ନିତ୍ୟାନନ୍ଦ କହିଲା, "ମାସକୁ ମାସ ଦରମା ଦେଲା ବେଳକୁ ତ ଦଶ ପ୍ରକାରର କଥା ।

ନୂଆ ଜାମା ଖଣ୍ଡେ ବି ତ କିଣିବାର ନାଁ ନାହିଁ । ପୁଣି ବହି କୋଉଠୁ କିଣି ଦେଇଥାନ୍ତ ?" ପଣ୍ଡିତେ କହିଲେ, "ବହି କିଣି ଦେବାକୁ କୋଉ ଦିନ ମନା କରିଥିଲି ? ତୋ ପାଇଁ କ'ଣ ଜାମା କିଣା ହଉନି ? ସମସ୍ତଙ୍କୁ ଯେତିକି ଦିଆ ହଉଚି ତା'ଠାରୁ କ'ଣ ତୋର କମ ?" ନିତ୍ୟାନନ୍ଦ କହିଲା, "ଯଦି ଚଳେଇ ନପାରିବ, ଏତେବଡ଼ ପରିବାର କାହିଁକି କରୁଥିଲ ?"

ଏ କଥା ପଣ୍ଡିତଙ୍କୁ ଗଭୀର ଆଘାତ ଦେଲା ଏବଂ ଆଉ କିଛି ନ କହି ସେ ଘରୁ ବାହାରି ଗଲେ । ସେଇ ଦିନଠାରୁ ପୁଅ ସହିତ ତାଙ୍କର କଥାବାର୍ତ୍ତା କମି କମି ଶେଷରେ ସେମାନଙ୍କର ଯାହା କିଛି କହିବାର କଥା ତାଙ୍କ ସ୍ତ୍ରୀଙ୍କ ମାଧ୍ୟମରେ ହିଁ ହେଲା । ଆଉ ଥରେ ପରୀକ୍ଷା ଦେଇ ନିତ୍ୟାନନ୍ଦ ଯଦିଓ ପାସ କଲା, ତା'ର ଆଉ ପାଠରେ ମନ ନଥିଲା । ଦିନସାରା କଲେଜ ଯିବା ନାଁରେ ଯାଇ ସେ କୁଆଡ଼େ କୁଆଡ଼େ ବୁଲି ସନ୍ଧ୍ୟାବେଳକୁ ଘରକୁ ଆସୁଥିଲା । ମା'କୁ କହୁଥିଲା ଯେ, ସେ ଚାକିରି ଖୋଜିବାକୁ ଯାଉଥିଲା । ମଝିରେ ମଝିରେ ସେ କୁଆଡ଼େ କ'ଣ ଛୋଟ ଛୋଟ କାମ କରି ଯାହା ପଇସା ରୋଜଗାର କରୁଥିଲା, ତାକୁ ନିଜର ଜାମାପଟା କିଣି, ନହେଲେ ସିଗାରେଟ ପିଇ ଖର୍ଚ୍ଚ କରି ଦେଉଥିଲା । ପଣ୍ଡିତଙ୍କର ଭୟ ହଉଥିଲା ତା' ଦେଖାଦେଖି ତାଙ୍କର ଆଉ ଦୁଇପୁଅ ବି ସେଇଭଳି ଖରାପ ହୋଇଯିବେ ।

ପଣ୍ଡିତେ ଦିନେ ଖାଉ ଖାଉ ସ୍ତ୍ରୀଙ୍କୁ କହିଲେ, "ତୁମର ଗେହ୍ଲା ପୁଅକୁ କହି ଦିଅ, ଘରେ ଯଦି ରହିବ ମୋ କଥା ମାନି ଚଳିବ ।" ସ୍ତ୍ରୀ ଥାଳିକୁ ଆବଶ୍ୟକତାଠାରୁ ବେଶି ଜୋରରେ ତଳେ ପିଟିଦେଇ କହିଲେ, "ତୁମେ ତାକୁ ପିଲା ଦିନୁ କିଛି ନକହି ତା' ମୁହଁ ବଢ଼ାଇଛ । ଏବେ କ'ଣ ନା ମୋ ଗେହ୍ଲା ପୁଅ ! ଯାହା କହିବା କଥା ତାକୁ ସିଧା କୁହ । ମୁଁ ଆଉ ଏ ଦୂତ କାମ କରିପାରିବି ନାହିଁ ।" ତାଙ୍କ କଥାକୁ ନ ଶୁଣିଲା ପରି ପଣ୍ଡିତେ କହିଲେ, "ତା'ର ଖାଇବା ବନ୍ଦ କରିଦିଅ ।" ସ୍ତ୍ରୀ କହିଲେ, "ସେ କ'ଣ ଘରେ ଖାଉଛି ? କୋଉଠି କ'ଣ ଖାଉଥିବ; ଚାରିଦିନ ହେଲା ଘରକୁ ଖାଲି ଶୋଇବାକୁ ଆସୁଛି ।" "କୋଉଠି ଖାଉଛି ?" ପଣ୍ଡିତେ ବ୍ୟସ୍ତ ହୋଇ ପଚାରିଲେ । ସ୍ତ୍ରୀ କହିଲେ, "ମୁଁ ଜାଣେ ନାହିଁ । ଯଦି ଇଚ୍ଛା ତାକୁ ପଚାର ।"

ଏଇଭଳି ସ୍ତ୍ରୀ ସାଙ୍ଗରେ କଥା କହୁଥିବା ବେଳେ ଆଜିକାଲି ପ୍ରତିଟି କଥାବାର୍ତ୍ତା କେମିତି କୁଆଡ଼େ ଯାଇ କଳିରେ ପରିଣତ ହୋଇ ଯାଉଥିଲା ଏବଂ ସ୍ତ୍ରୀ ତାଙ୍କ ପାଖରୁ ଉଠି ଚାଲି ଯାଉଥିଲେ । ଆଜି କାଲୁ ପୁଅ ପ୍ରଥମ ଦିନ ଅଫିସକୁ ଯିବ ବୋଲି ସ୍ତ୍ରୀ ଅନେକ କଷ୍ଟରେ ନିଜର ମିଜାଜକୁ ସମ୍ଭାଳି ରଖିଥିଲେ । ପୂଜା କରୁ କରୁ ପଣ୍ଡିତେ ଭାବିଲେ ଯେ ସକାଳୁ ଯାହା ହେଲା ହେଲା, ସେ ମଧ୍ୟ ବର୍ତ୍ତମାନ ନିଜର କ୍ରୋଧକୁ ଶାନ୍ତ

ରଖିବେ, ଯେମିତ ପୁଅ ଭଲରେ ଅଫିସକୁ ଯାଏ । ପୂଜାରୁ ଉଠି କିଛି ଫୁଲ ଆଣି ସେ ସ୍ତ୍ରୀଙ୍କ ହାତରେ ଦେଇ ନରମ ସ୍ୱରରେ କହିଲେ, "କ'ଣ ସେ ନନ୍ଦପୁ ଉଠିଲାଣି ?" ସ୍ତ୍ରୀ ଏଥର ସାମାନ୍ୟ ବିରକ୍ତ ହୋଇ ତାଙ୍କ ଆଡ଼କୁ ଜଳଖିଆ ଥାଳିଆ ବଢ଼ାଇ ଦେଉ ଦେଉ କହିଲେ, "ତମେ ତମର ଟ୍ୟୁସନକୁ ଯାଅ । ସେ କେମିତ ଠିକ ସମୟରେ ଅଫିସକୁ ଯିବ, ସେ କଥା ମୁଁ ବୁଝିବି ।" ଥାଳିଆକୁ ଫେରାଇ ଦେଇ ପଣ୍ଡିତେ କହିଲେ, "ନା, ମତେ ଆଜି ଭୋକ ନାହିଁ ।"

ଏହି ସମୟରେ ବାହାରେ କିଏ ମଟର ସାଇକେଲରୁ ଓହ୍ଲାଇ ନିତ୍ୟାନନ୍ଦକୁ ଡାକିଲା ଓ ନିତ୍ୟାନନ୍ଦ ଧଡ଼ପଡ଼ ହୋଇ ଉଠି ବାହାରକୁ ଗଲା । ପଣ୍ଡିତେ ସ୍ତ୍ରୀଙ୍କୁ ଶୁଣାଇ ଶୁଣାଇ କହିଲେ, "ଏଇ ଶଳା ପିଲାଙ୍କ ସାଙ୍ଗରେ ପଡ଼ି ନିତ୍ୟାନନ୍ଦ ଆମର ଖରାପ ହୋଇଗଲା ।" ସ୍ତ୍ରୀ କହିଲେ, "ହଉ, ତମେ ଯାଅ । କ'ଣ ସତରେ ଜଳଖିଆ ଖାଇବ ନାହିଁ ?" ଏ କଥାର ଜବାବ ନଦେଇ ପଣ୍ଡିତେ କହିଲେ, "ତମେ ମନେ କରି ନିତ୍ୟାନନ୍ଦକୁ କହିଦେବ ସେ ଯେମିତ ତା'ର ସାର୍ଟିଫିକେଟ ସବୁ ସାଙ୍ଗରେ ନେଇ କରି ଯାଏ ।" ସ୍ତ୍ରୀ କହିଲେ, "ହଁ, ତମେ ବ୍ୟସ୍ତ ହୁଅ ନାହିଁ । ହେଲେ କିଛିଦିନ ପରେ ବାବୁଙ୍କୁ କହି ଆଉ କ'ଣ ଗୋଟାଏ ଚାକିରି କରାଇ ଦିଅ । ସମସ୍ତେ କହୁଛନ୍ତି, ପଣ୍ଡିତଙ୍କ ପୁଅ ହୋଇ ଶେଷକୁ ପିଅନ ଚାକିରି କଲା ।"

ଏଥରକ ପଣ୍ଡିତେ ରାଗିଲେ ନାହିଁ । ଫେରି ଆସି ସ୍ତ୍ରୀଙ୍କ ପାଖରେ ବସିଲେ । କହିଲେ, "ମୁଁ କ'ଣ ସେ କଥା ଜାଣେ ନାହିଁ । ହେଲେ ଆଉ କ'ଣ କରିବା କହ ? ଆଉ କିଏ ଚାକିରି ଦେବ ? ଏଇ ଚାକିରି ବି ତ କେତେ ଖୋସାମତ କରି କରି କଷ୍ଟରେ ମିଳିଲା ତମେ ଜାଣ । ଆଜିକାଲି ପିଅନ ଚାକିରିରେ ବି ବେଶ ଦରମା । ଦରମା ଛଡ଼ା ବୋନସ ବି ମିଳିବ । ସବୁ ମିଶି ସେ ମୋ ଭଳି ଦରମା ପାଇବ । ଆଜିକାଲି ସେ ପୁରୁଣା ଯୁଗ ବି ଗଲାଣି ଯେ ପିଅନଙ୍କୁ ଘର କାମ କରେଇବେ । ଖାଲି ଯାହା ଅଫିସ କାଗଜପତ୍ର ନେବା ଆଣିବା କାମ । ନିତ୍ୟାନନ୍ଦ ଯଦି ପରେ ଭଲରେ ଇଣ୍ଟରମିଡ଼ିଏଟ ପରୀକ୍ଷାଟା ଦେଇଦେବ, ତେବେ ସେଇ ଅଫିସରେ କିରାଣି ଚାକିରି ବି ମିଳିଯାଇ ପାରେ ।" ସ୍ତ୍ରୀ ତଥାପି ଖୁସି ଜଣା ନ ପଡ଼ିବାରୁ ପଣ୍ଡିତେ କହିଲେ, "ଏଇ କାମଟା କିଛି ଦିନ କରୁ । ଦେଖିବା, ପୁଣି ମୁଁ ବାବୁଙ୍କୁ କହିବି । ତମେ ତାକୁ ଟିକିଏ ବୁଝାଇ ଦିଅ । ଏଇ ଖରାପ ପିଲାଙ୍କ ସାଙ୍ଗରେ ନ ମିଶି କାମରେ ମନ ଦଉ ।"

ପଣ୍ଡିତେ ଭାବିଥିଲେ ସେ ବାହାରିବା ବେଳେ ନିତ୍ୟାନନ୍ଦ ସାଙ୍ଗରେ ଟିକିଏ କଥାବାର୍ତ୍ତା ହୋଇଯିବେ । କିନ୍ତୁ ବାହାରେ ନିତ୍ୟାନନ୍ଦ ତା'ସାଙ୍ଗ ସହିତ କ'ଣ କଥା-ବାର୍ତ୍ତାରେ ବ୍ୟସ୍ତ ଥିଲା । ପଣ୍ଡିତେ ରାଗ ସମ୍ଭାଳି ପାରିଲେ ନାହିଁ ଏବଂ ମୁହଁ ଫୁଲାଇ

ବାହାରି ଗଲେ । ନିତ୍ୟାନନ୍ଦର ସାଙ୍ଗ କହିଲା, "ଆଜି କଣ ହେଲା କିରେ ?" ନିତ୍ୟାନନ୍ଦ କହିଲା, "ନାହିଁ କିଛି ନାହିଁ । ବୁଢ଼ା ସବୁବେଳେ ଏମିତି ଗରଗର ହଉଚି । ତୁ ସେ ଆଡ଼କୁ ଅନା ନା ।" ପଣ୍ଡିତଙ୍କୁ ଶୁଣିବା ଭଳି ନିତ୍ୟାନନ୍ଦ ଏ କଥା କହିଥିଲା । ଆଉ ରାଗିବେ ନାହିଁ ବୋଲି ପଣ୍ଡିତେ ମନ ଭିତରେ ଯେତେ ଶପଥ ନେଇଥିଲେ ବି ନିତ୍ୟାନନ୍ଦର କଥାରେ ତାଙ୍କର ମୁଣ୍ଡ ଜଳିଗଲା । ଆଉ କେତେବେଳେ ହୋଇଥିଲେ ସେ ପଛକୁ ଫେରି ଆସି କ'ଣ କହିଥାନ୍ତେ । କିନ୍ତୁ ଆଜି ଆଗକୁ ଜୋରରେ ପାଦ ପକାଇ ଯାଉ ଯାଉ ମନକୁ ମନ କହିଲେ, ଶଳା କାଲିକାର ପିଲା, କ'ଣ ନା ବାପଙ୍କୁ ଗାଳି ଦଉଚି ! ପିଲାଦିନୁ ମରି ନ ଗଲା କାହିଁକି ? କାହିଁକି ବଞ୍ଚି ରହିଲା ମତେ ଏମିତି ଜାଳି ପୋଡ଼ି ମାରିବାକୁ ?

ଜମିଦାର ଘର ଆଡ଼କୁ ଜଲଦି ଜଲଦି ପାଦ ବଢ଼ାଇଲା ବେଳକୁ ପଣ୍ଡିତେ ପୁଣି ସେହି କଥା ଭାବିଲେ । କାହିଁକି ତାଙ୍କର ସୁନାପୁଅ ଏମିତି କୁଳାଙ୍ଗାର ହୋଇଗଲା ? ପ୍ରଥମେ ତ ସବୁ ଠିକ୍ ଠାକ୍ ଥିଲା । କ'ଣ ତାଙ୍କର ଆଉ ଏତେ ଗୁଡ଼ାଏ ପିଲା ଜନ୍ମ ହେଲେ ବୋଲି ? କାହିଁ, ଆଉ ଦି'ଟା ପୁଅ ତ ଶାନ୍ତଶିଷ୍ଟ ଅଛନ୍ତି । ନାଁ ସେ ଦିହେଁ ବି ବୟସ ବଢ଼ିଲେ ନିତ୍ୟାନନ୍ଦ ଭଳି ହୋଇଯିବେ ? ଅବଶ୍ୟ ସେ ଏତେବଡ଼ ସଂସାର ଚଳାଇ ପାରୁ ନାହାନ୍ତି । କିଏ ଜାଣିଥିଲା ଦରଦାମ ଏତେ ବଢ଼ିଯିବ ବୋଲି ? ତାଙ୍କର ଆଜିକାଲି ଆଉ ପିଲଙ୍କୁ ପାଠ ପଢ଼ାଇବାର ସମୟ ହୁଏ ନାହିଁ । ଟ୍ୟୁସନରେ ସବୁ ସମୟ ବିତିଯାଏ । ପର ପିଲଙ୍କୁ ପାଠ ପଢ଼ାଇଲା ବେଳେ ପଣ୍ଡିତଙ୍କର ଇଚ୍ଛା ହୁଏ ନିଜ ପିଲଙ୍କୁ ପାଖରେ ବସାଇ ଏମିତି ପଢ଼ାଇ ପାରନ୍ତେ କି ? କିନ୍ତୁ ତାହା କେମିତି ହୁଏ ? ଘର ତ ପୁଣି ଚଳାଇବାକୁ ପଡ଼ିବ ।

ବାବୁଙ୍କ ଘର ଆଡ଼କୁ ଅନାଇଲେ ପଣ୍ଡିତେ । ଜମିଦାରୀ କୋଉ କାଳୁ ଗଲାଣି, କିନ୍ତୁ ଜମିଦାରଙ୍କର କିଛି ବି ପରିବର୍ତ୍ତନ ହୋଇ ନାହିଁ । ଜମି ବଦଳରେ ତାଙ୍କର କାରଖାନା ବସିଲା । ଦରଦାମ ଯେତେ ବଢ଼ିଲେ ବି ତାଙ୍କର କି ଚିନ୍ତା ? ପଣ୍ଡିତଙ୍କର ଦେଖିବାବେଳକୁ ଏ ଘରର ଚାଲିଚଳଣରେ କୌଣସି ବ୍ୟତିକ୍ରମ ହୋଇ ନାହିଁ । ଜମିଦାରୀ ଗଲେ ବି ଲୋକେ ତାଙ୍କୁ ଏପର୍ଯ୍ୟନ୍ତ ଜମିଦାର ବୋଲି କହୁଛନ୍ତି । ପଣ୍ଡିତେ ଘର ଭିତରେ ପଶିଲା ବେଳକୁ ବାହାରେ ବାବୁ ଛିଡ଼ା ହୋଇଥିଲେ । ପଣ୍ଡିତଙ୍କୁ ନମସ୍କାର କରି କହିଲେ, "ମଲୁ ଆପଣଙ୍କୁ ଅପେକ୍ଷା କରୁଛି ।" ଏ କଥାରେ ସାମାନ୍ୟ ସମାଲୋଚନା ବି ଥିଲା, କାରଣ ପଣ୍ଡିତେ ଡେରିରେ ପହଞ୍ଚି ଥିଲେ । ଟିକିଏ ଅପ୍ରତିଭ ହୋଇ ପଣ୍ଡିତେ କହିଲେ, "ଆପଣଙ୍କ ଦୟାରୁ ପୁଅ ଆଜି ବ୍ୟାଙ୍କରେ ଜଏନ କରିବାକୁ ଯାଉଛି; ଟିକିଏ ଡେରି ହୋଇଗଲା ।" "ନା, ନାଁ ସେଥିରେ କଣ ଅଛି", ଅତି

ବିନୟର ସହିତ ବାବୁ କହିଲେ, "କି ବ୍ୟବସ୍ଥା କଲ ?" ପଣ୍ଡିତେ ଟିକିଏ ସଂକୋଚର ସହିତ କହିଲେ,- "ଏବେ ତ ପିଅନ ବ୍ୟବସ୍ଥା । ଆପଣଙ୍କ ମନେ ନାହିଁ ବୋଧହୁଏ, ଆପଣ ସେଦିନ ଅଫିସରଙ୍କୁ କହୁଥିଲେ ।" ବାବୁ କହିଲେ, "ଯାହା ହେଉ -ଭଲ ହେଲା ।"

ଲଲୁ ଆସି ପଣ୍ଡିତଙ୍କର ପାଦ ଛୁଇଁ ପ୍ରଣାମ କଲା । ତା'ର ପଢା ଘରେ ପଣ୍ଡିତଙ୍କ ପାଇଁ ଜଳଖିଆ ରଖା ହୋଇଥିଲା । ସବୁଦିନେ ବାବୁଙ୍କ ଘରେ ଏତେ ଭଲ ଜିନିଷ ଏକା ଖାଉଥିବାରୁ ପଣ୍ଡିତଙ୍କର ମନ କ'ଣ ହୋଇଯାଏ । ସେ ତାଙ୍କୁ ଦିଆ ଯାଇଥିବା ଖାଇବା ଜିନିଷର ଦାମ ଲଗାଇ ଭାବନ୍ତି, ଏତିକି ଖାଇବାକୁ ନଦେଇ ଯଦି ତାଙ୍କର ଦରମା ଏତିକି ବଢାଇ ଦିଅନ୍ତେ, ଘରର କାମରେ ଲାଗନ୍ତା । କେବେ କେବେ ଭାବନ୍ତି, ଏ ଖାଇବା ଜିନିଷ ଯଦି ତାଙ୍କ ଘରକୁ ନେଇଯାଇ ପାରନ୍ତେ, ତାଙ୍କ ଝିଅ-ମାନେ କି ଖୁସିରେ ଖାଆନ୍ତେ ! ଏଠାରେ ବସି ଖାଇଲାବେଳେ ତାଙ୍କୁ କେମିତି ଦୋଷୀ ମନେ ହୁଏ, ଆଉ ସେଥିପାଇଁ ତାଙ୍କୁ ଏଠାରେ ରୋଜ ଖାଇବାକୁ ମିଳୁଥିବା କଥା ଘରେ କହନ୍ତି ନାହିଁ । ଥରେ ଥରେ ଭାବନ୍ତି, ତାଙ୍କ ବ୍ୟାଗରେ ଲୁଚାଇ ସେ ମିଠା ଦୁଇଟି ଘରକୁ ନେଇ ଯାଇ ତାଙ୍କ ଶ୍ରେଷ୍ଠ ଝିଅକୁ ଦେବେ କି !

ଲଲୁ ତାଙ୍କର ଖାଇବାକୁ ଅପେକ୍ଷା କରି ବସିଥିଲା, ସେ ଖାଇ ସାରିଲେ ପଢ଼ି-ବାକୁ ବସିବ । ଆଜି କିନ୍ତୁ ପଣ୍ଡିତଙ୍କର ଆଦୌ ଖାଇବାକୁ ମନ ହେଲା ନାହିଁ । ଲଲୁ କହିଲା, "ଗୁରୁଜୀ, ଆପଣଙ୍କର କ'ଣ ଦେହ ଖରାପ ? ବାପାଙ୍କୁ କହିବି ଡାକ୍ତର ଡାକି ଦେବେ ?" ପଣ୍ଡିତେ କହିଲେ, "ନା ବାପା, ଠିକ୍ ହୋଇଯିବ ।" ଲଲୁ କହିଲା, "ଆପଣ ଟିକିଏ ବସନ୍ତୁ । ମୁଁ ଆପଣଙ୍କ ପାଇଁ ଚା' ନେଇ ଆସୁଛି ।" ପଣ୍ଡିତେ ଲଲୁକୁ ଅନାଇଲେ । ସୁନ୍ଦର ସ୍ୱାସ୍ଥ୍ୟବାନ ଦିଶୁଛନ୍ତି । କି ଶାନ୍ତଶିଷ୍ଟ ଭଦ୍ର ପିଲା । କି ପ୍ରଖର ବୁଦ୍ଧି । ପାଠରେ କି ନିଷ୍ଠା !

ପଣ୍ଡିତେ ଲଲୁର ପଢା ଘରର ଚାରିଆଡ଼କୁ ଅନାଇଲେ । ଏଇଟି ଲଲୁର ନିଜସ୍ୱ ପଢ଼ା ଘର । ସେ ପାଠ ପଢ଼ିଲା ବେଳେ ଏ ଘରକୁ କେହି ଆସନ୍ତି ନାହିଁ । କୋଠରି ଭିତରେ ଲଲୁର ନିଜର ଲାଇବ୍ରେରୀ । ବିଭିନ୍ନ ପ୍ରକାରର ବହି । ଏନ୍‌ସାଇ-କ୍ଲୋପେଡ଼ିଆରେ ଭର୍ତ୍ତି । ଅନ୍ୟ ପାଖରେ ଖେଳିବାର ଜିନିଷମାନ । ପଣ୍ଡିତଙ୍କର ଧାରଣା ଥିଲା ଧନ ସମ୍ପତ୍ତି ପିଲାମାନଙ୍କୁ ଅଭଦ୍ର, ଗର୍ବୀ ଓ ମୂର୍ଖ କରିଦିଏ । କିନ୍ତୁ ଲଲୁ ଯେମିତି ଏ କଥାର ବ୍ୟତିକ୍ରମ ଥିଲା । ସେ ତାଙ୍କୁ ସବୁବେଳେ ଅତି ସମ୍ମାନର ସହିତ ଦେଖୁଥିଲା । ଦେଖିବାକୁ ଗଲେ, ବାବୁଙ୍କର ସମ୍ପୂର୍ଣ୍ଣ ପରିବାରଟି ମଧ୍ୟ ଅତି ଶାନ୍ତ ଓ ଭଦ୍ର ପ୍ରକୃତିର ଏବଂ ଧର୍ମପରାୟଣ ଥିଲା । ଯଦିଓ ଲାଲୁ ଇଂରେଜୀ ସ୍କୁଲରେ ପଢୁଥିଲା, ବାବୁ ତାକୁ ଘରେ ସଂସ୍କୃତ ପଢ଼ାଇବାର ବ୍ୟବସ୍ଥା କରିଥିଲେ ।

ନିଜର ଅନିଚ୍ଛା ସତ୍ତ୍ୱେ ପଣ୍ଡିତେ ନିଜ ଘର ସହିତ ଏ ଘରର ତୁଳନା କଲେ । ଦି ବଖରିଆ ଘରେ ସାତ ଜଣ ଲୋକ । ଏକା ସାଙ୍ଗରେ ବସି ସବୁ ପିଲାମାନେ ପାଟି କରି ପାଠ ପଢ଼ୁଛନ୍ତି । କାହାରି ଦେହରେ ଭଲ ଜାମାକୁର୍ତ୍ତା ନାହିଁ । ଘର ସାରା ଜିନିଷପତ୍ର ଭର୍ତ୍ତି । ଗୋଟାଏ କଡରେ ଶ୍ରେଷ୍ଠ ଝିଅ ଜରରେ ପଡ଼ି ରହିଛି । ତାଙ୍କର ସାନ ପୁଅ ତାଙ୍କୁ କଣ ଗୋଟାଏ ପାଠ ବୁଝାଇ ଦେବାକୁ କହୁଛି ଏବଂ ପଣ୍ଡିତେ ତା ଉପରେ ରାଗିଯାଇ କହୁଛନ୍ତି, "ସ୍କୁଲରେ କଣ ଚକ୍ଷୁ ଦେଇ ପାଠ ପଢ଼ୁଛୁ ? ନବୁଝି ପାରିଲେ ସ୍କୁଲରେ ଯାଇ ମାଷ୍ଟ୍ରକୁ ପଚାର ।"

ଲାଲୁ ଯେତେବେଳେ ଚା ନେଇ ଆସି ତାଙ୍କ ଆଗରେ ଠିଆ ହେଲା, ପଣ୍ଡିତେ କେମିତି ଆଉ ପ୍ରକୃତିସ୍ଥ ଅବସ୍ଥାରେ ନଥିଲେ । ତାଙ୍କର କଣ୍ଠରୋଧ ହୋଇ ଯାଇଥିଲା ଏବଂ ଆଖିରେ ଲୁହ ଜମି ଆସୁଥିଲା । ଅନେକ କଷ୍ଟରେ ବି ସେ ଖାଇବା ଜିନିଷକୁ ଗଳା ଭିତରକୁ ନେଇ ପାରିଲେ ନାହିଁ । ଟିକିଏ ଚା ପିଇ କିଛି ସମୟ ସେ ତଳକୁ ମୁହଁ ପୋତି ବସିଲେ । ଲାଲୁ କହିଲା, "ଆଜି ଆପଣଙ୍କ ଦେହ ଭଲ ନାହିଁ । ଆଜି ଟ୍ୟୁସନ ଥାଉ ।" ପଣ୍ଡିତେ କହିଲେ, "ନା, ବାପା । ଆଜି କେମିତି ମନ ଭଲ ନାହିଁ । ହଉ, ବହି ବାହାର କର ।"

ଅଳ୍ପ ସମୟ ପାଠ ପଢ଼ାଇ ପଣ୍ଡିତେ ସେଠାରୁ ବାହାରି ଆସିଲେ । ନିତ୍ୟାନନ୍ଦ ଠିକ ସମୟରେ ଅଫିସ ଗଲା କି ନାହିଁ ଜାଣିବାକୁ ସେ ଭାବିଲେ ସ୍କୁଲ ଯିବା ଆଗରୁ ଘର ବାଟ ଦେଇ ଯିବେ । ଘରକୁ ଯାଉ ଯାଉ ପଣ୍ଡିତେ ଚିନ୍ତା କଲେ, କ'ଣ ଧନ ସଂପତ୍ତି ହିଁ ବଡ଼ କଥା ? ତାଙ୍କଠାରୁ ବି ତ ଅନେକ ଦୁଃଖୀ ରଙ୍କୀ ଅଛନ୍ତି । ଶାସ୍ତ୍ରରେ ଏତେ କଥା କୁହା ଯାଉଛି ଧନ ସମ୍ପତ୍ତିର ଅବଗୁଣ ବିଷୟରେ । ତଥାପି କାହିଁକି ଏତେ ଅଶାନ୍ତ ତାଙ୍କର ? ଧନୀ ଲୋକର ତ ଈଶ୍ୱରଙ୍କୁ ପାଇବା ବି ମନା । ଏସବୁ ଚିନ୍ତାରୁ ଆସି ସେ ନିଜର ଘରର ଶ୍ରେଷ୍ଠ କଥାସବୁ ଭାବିଲେ । ଯାହା ହଉ, ନିତ୍ୟାନନ୍ଦ ଚାକିରି କଲେ ଘରର ସମସ୍ୟା ଅନେକ କମିଯିବ । ହଉ ପଛେ ପିଅନ ଚାକିରି । ପଇସା ତ ଘରକୁ ଆସିବ ! ଖାଲି ଭଲରେ ଭଲରେ ଚାକିରି କଲେ ହେଲା । ଆଉ ଯେମିତି ସେ ଖରାପ ସାଙ୍ଗଙ୍କ ସାଙ୍ଗରେ ନପଡ଼େ । ଘରର ଅବସ୍ଥା ତ ଅନ୍ତତଃ ଟିକିଏ ସୁଧୁରି ଯିବ । ପଣ୍ଡିତେ ନିଷ୍ପତ୍ତି କଲେ ଆଜି ନିତ୍ୟାନନ୍ଦର ପ୍ରଥମ ଚାକିରି ଦିନରେ ମନକୁ ଶାନ୍ତ ରଖିବେ, ଆଉ ରାଗିବେ ନାହିଁ ଏବଂ ସୁଯୋଗ ହେଲେ ପୁଅ ସହିତ ଦି ପଦ ଭଲରେ କଥାବାର୍ତ୍ତା କରିବେ ।

କିନ୍ତୁ ଘର ପାଖରେ ପହଞ୍ଚିବାବେଳକୁ ପୁଣି ଏକ ନୈରାଶ୍ୟ ପଣ୍ଡିତଙ୍କୁ ଘେରିଗଲା । ଏଠାରେ ସବୁ କିଛି ପୁରୁଣା, ଭଙ୍ଗାଚୁଙ୍ଗା, ଅପରିଷ୍କାର, ଅପରିଚ୍ଛନ୍ନ । ପ୍ରତିଟି

ଜିନିଷ ଏକ ଅଭାବର ପ୍ରତୀକ । ପଣ୍ଡିତେ ଘର ଭିତରେ ପଶିଛନ୍ତି, ସ୍ତ୍ରୀ କହିଲେ, "ନିତ୍ୟାନନ୍ଦ ଭଲରେ ଭଲରେ ଗଲା ।" ପଣ୍ଡିତେ କହିଲେ, "ସେ ମଲା କି ଗଲା, ମୋର ଜାଣିବା ଦରକାର ନାହିଁ ।" ସ୍ତ୍ରୀ କିନ୍ତୁ ଆଜି ରାଗିଲେ ନାହିଁ । କହିଲେ, "କ'ଣ ହୋଇଚି ତମର ? କ'ଣ ଦେହ ଖରାପ ?" ପଣ୍ଡିତେ ବିରକ୍ତ ହୋଇ କହିଲେ, "ତମେ ଯାଅ । ବକ ବକ କରି ଆଉ ମୋର ମୁଣ୍ଡ ଖାଅ ନାହିଁ ।"

—

## ମ୍ଲେଚ୍ଛ

ପୁରୀକୁ ଯିବା ବସ ସମୟ ଯାଇ ଓ ଅନେକ ଡେରି ହୋଇ ଯାଇଥିଲା, ଏ ପର୍ଯ୍ୟନ୍ତ ବସର ଦେଖା ଦର୍ଶନ ନ ଥିଲା । ବସକୁ ଅପେକ୍ଷା କରୁଥିବା ଲୋକମାନେ ଧାର୍ଣ୍ଣିକତାର ସହିତ ଛିଡ଼ାହୋଇ ରହିଥିଲେ ଏବଂ ନିଜ ନିଜ ଭିତରେ ଆଳାପ ଆଲୋଚନା କରି ସମୟ କଟାଇବାକୁ ଚେଷ୍ଟା କରୁଥିଲେ । କେବଳ ବିଦେଶୀ ଗୋରା ଲୋକଟି ଉଦ୍‌ବିଗ୍ନ ଓ ଅସ୍ଥିର ଜଣା ପଡୁଥିଲା ଏବଂ ବାରମ୍ବାର ନିଜର ଘଡ଼ିକୁ ଓ ରାସ୍ତାରେ ବସ ଆସୁଛି କି ନାହିଁ ଏ କଥା ଦେଖୁଥିଲା । ବସ ଆସିବାରେ ଅନେକ ଡେରି ହେବାରୁ ସେ ବର୍ତ୍ତମାନ ରାସ୍ତା କରରେ ଚକା ପକାଇ ବସିଥିଲା ଏବଂ ଘଡ଼ି ଓ ରାସ୍ତାକୁ ଅନାଇବା ମଝିରେ 'ବିନା ଦୁଃଖରେ ହିନ୍ଦୁସ୍ତାନୀ' ବହିଟିକୁ ପଢ଼ି ଚେଷ୍ଟା କରୁଥିଲା ବର୍ଣ୍ଣମାଳାକୁ ଆୟତ୍ତ କରିବାକୁ ।

ଗୋରା ଲୋକର ଏଇଟି ଥିଲା ପ୍ରଥମ ଭାରତ ଭ୍ରମଣ । ନିଜର ତିରିଶ ବର୍ଷର ଜୀବନକାଳ ଭିତରେ ସେ ତାର ଆମେରିକାର ସହରରୁ ବାହାରିକୁ ବାହାରି ନ ଥିଲା । ତେବେ ସ୍କୁଲରେ ପଢ଼ିବା ବେଳୁ ତାର ଭାରତକୁ ଆସିବା ପାଇଁ ଅଦମ୍ୟ ଇଚ୍ଛା ଥିଲା ଏବଂ ଅନେକ ଦିନର ସଞ୍ଚୟ ଓ ଯୋଜନା ପରେ ସେ ବର୍ତ୍ତମାନ ଏଠାକୁ ଆସିବାକୁ ସମର୍ଥ ହୋଇଥିଲା । ତାର ପରିକଳ୍ପନା ମଧ୍ୟରେ ଥିଲା ଭାରତରେ ଦୁଇ ମାସ ରହିବା ଭିତରେ ସିତାର ବାଦନ, ଯୋଗାଭ୍ୟାସ ଏବଂ ଏକ ଭାରତୀୟ ଭାଷା ଶିକ୍ଷା ସହିତ ଏଇ ଦେଶର ପ୍ରତିଟି ଦର୍ଶନୀୟ ସ୍ଥାନକୁ ଦେଖିବା । ଆମେରିକାର ଶୀତରୁ ଆସି ଭାରତର ଗରମ ପାଣିପାଗ ଭିତରେ ପଡ଼ି ସେ ପ୍ରଥମେ ଅସ୍ତବ୍ୟସ୍ତ ହୋଇ ଯାଇଥିଲା । କିନ୍ତୁ ସେ ତାର ସଂକଳ୍ପରେ ଦୃଢ଼ ନିଷ୍ଠ ଥିଲା ଏବଂ ଏ ଭିତରେ ଗୋଟିଏ ସିତାର କିଣି ସାରିଥିଲା, ତଥା ଯୋଗ ଓ ହିନ୍ଦୁସ୍ତାନୀ ଶିଖିବାର ବହିମାନ ମଧ୍ୟ ପାଖରେ ରଖିଥିଲା । ଗରମରୁ ସାମାନ୍ୟ ରକ୍ଷା ପାଇବା ପାଇଁ ସେ ବର୍ତ୍ତମାନ ମୁଣ୍ଡକୁ ସମ୍ପୂର୍ଣ୍ଣ ମୁଣ୍ଡିତ କରି ଦେଇଥିଲା ଏବଂ କେବଳ ହାଫପାଣ୍ଟ ଓ ଗେଞ୍ଜି ପିନ୍ଧିଥିଲା । ହାତରେ ସିତାର ଓ କାନ୍ଧ ବ୍ୟାଗରେ ବହି ଧରି ସେ ବର୍ତ୍ତମାନ ବାହାରିଥିଲା ତୀର୍ଥ ସ୍ଥାନ ଓ ଗ୍ରାମାଞ୍ଚଳ ଭ୍ରମଣରେ । କିନ୍ତୁ ଭାରତବର୍ଷରେ ଦଶଦିନ କଟାଇବା ପରେ ସେ ବର୍ତ୍ତମାନ

ସଚେତନ ଥିଲା ଯେ ତାର ପରିକଳ୍ପନା ଅତୀବ ଦୁଷ୍କର । ବସର ବିଳମ୍ବରେ ଅସିବାରେ ତାର କାର୍ଯ୍ୟକ୍ରମର ଯେଉଁ ବ୍ୟାଘାତ ହେଉଥିଲା, ସେଥି ପାଇଁ ସେ ବର୍ତ୍ତମାନ କ୍ଷୁବ୍ଧ ହେଉଥିଲା ।

ଏଇ ବିଦେଶୀ ଲୋକଟିର ଅପ୍ରସ୍ତୁତି ଉପଭୋଗ କରୁଥିବା ଲୋକ ଭିନ୍ନ ଭିନ୍ନ ପ୍ରକାରର ଥିଲେ । କିଛି ଶ୍ରେଷ୍ଠ ପିଲା ତା ପୃଷ୍ଠ ପାଖେ ନିରାପଦ ଦୂରତ୍ୱରେ ଠିଆ ହୋଇ ଚୁପ୍‌ଚାପ୍ ତା ଆଡ଼କୁ ଅନାଇ ରହିଥିଲେ । ବସ ଅପେକ୍ଷାରେ ଛିଡ଼ା ହୋଇଥିବା ଲୋକମାନେ ଦୁଇଟି ଦଳରେ ବିଭକ୍ତ ଥିଲେ : ଧୋବଧାଉଳିଆ ଓ ମଳିମୁଣ୍ଡିଆ । ମଳିମୁଣ୍ଡିଆ ଲୋକମାନେ ଏଇ ବିଦେଶୀଟିକୁ ସାମାନ୍ୟ ଆଶ୍ଚର୍ଯ୍ୟର ସହିତ ଦେଖୁଥିଲେ, କିନ୍ତୁ ତା ବିଷୟରେ ଆଲୋଚନା କରିବାପାଇଁ ସାହସ ସଞ୍ଚୟ କରି ପାରୁ ନ ଥିଲେ । ତେବେ ଧୋବଧାଉଳିଆ ଲୋକଙ୍କର ବର୍ତ୍ତମାନ କଥାବାର୍ତ୍ତାର ପ୍ରଧାନ ବିଷୟବସ୍ତୁ ଥିଲା ଏଇ ଗୋରା ଲୋକଟି ।

ମଫସଲ କଲେଜର ଇଂରେଜୀ ଲେକଚରର, ଯେ କି ପ୍ରତିଦିନ ସିବା ଅସିବା କରୁଥିଲା, ମନେ ମନେ ଗୋରା ଲୋକଟି ସହିତ ଇଂରେଜୀ ଉପନ୍ୟାସମାନଙ୍କରେ ପଢ଼ିଥିବା ବିଭିନ୍ନ ଚରିତ୍ରମାନଙ୍କର ତୁଳନା କରି ବିଫଳ ହେଲା ଏବଂ ସ୍ୱଗତୋକ୍ତି କଲା, “ବିଲାତରେ ବର୍ତ୍ତମାନ ପୂରା ଡିକାଡ଼େନ୍ସ୍ ହୋଇ ଗଲାଣି ।” ଏ ଉକ୍ତିର ତାତ୍ପର୍ଯ୍ୟ ଯାହା ହେଉ ନା କାହିଁକି, ପାଖରେ ଠିଆ ହୋଇଥିବା ଶ୍ରେଷ୍ଠ ଠିକାଦାର, ଯେ କି ନିଜର ବିଲ୍ ଆଣିବାକୁ ପୁରୀ ଯାଉଥିଲା, ଏ କଥାରୁ ଖିଅ ନେଇ କହିଲା, “ବିଲାତରେ ବର୍ତ୍ତମାନ ବହୁତ ଖରାପ ଅବସ୍ଥା । ଲୋକ ନିଜ ଦେଶ ଛାଡ଼ି ପଳାଇ ଯାଉଛନ୍ତି ।” ଅଫିସ ଯାଉଥିବା କିରାଣି ନିଜକୁ ଏଇ ସବୁ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରୁ ବାଦ ପଡ଼ିଯାଉଥିବାର ଦେଖି କଥାକୁ ସାମାନ୍ୟ ବଦଳାଇ କହିଲା, “ସେ ଦିନ ଖବରକାଗଜରେ ବାହାରିଥିଲା ବିଲାତର ଲୋକମାନେ ବର୍ତ୍ତମାନ ହିନ୍ଦୁ ଧର୍ମ ପ୍ରତି ଆକୃଷ୍ଟ । ଏ ଲୋକଟି ନିଶ୍ଚୟ ଦୀକ୍ଷା ନେବା ପାଇଁ ମନ୍ଦିରକୁ ଯାଉଛି ।” କଳା କୋଟ ପିନ୍ଧିଥିବା ଓକିଲ, ଯେ କି ଶାସନୀ ବ୍ରାହ୍ମଣ ଥିଲା ଏବଂ ମୁକ୍ତିମଣ୍ଡପ ପଣ୍ଡିତ ସଭାର ସଭ୍ୟ ଭାବରେ ଗର୍ବ ଅନୁଭବ କରୁଥିଲା, କହିଲା, “ହିନ୍ଦୁ ଧର୍ମରେ ମ୍ଳେଚ୍ଛମାନଙ୍କୁ ଦୀକ୍ଷା ଦେବାର କୌଣସି ନିୟମ ନାହିଁ । କୋଉ ବାବା ସନ୍ଥ ଏମାନଙ୍କୁ ଦୀକ୍ଷା ଦେଉଥିବେ, ତାର ହିନ୍ଦୁ ଧର୍ମ ସହିତ କୌଣସି ସଂପର୍କ ନାହିଁ ।” ଏ ସବୁ କଥା ଶୁଣି ଶେଷ ହୋଇ ଆସୁଥିବା ସିଗାରେଟକୁ ତଳକୁ ଫିଙ୍ଗି ଛାତ୍ର ନେତା କହିଲା, “ଧର୍ମ ଫର୍ମ କଥା ମିଛ । ଯେତେ ଗୋରା ଲୋକ ଏଠିକି ଆସୁଛନ୍ତି, ସମସ୍ତେ ସି. ଆଇ.ଏ. ଏଜେଣ୍ଟ ।”

ଏ ଭିତରେ ଗୋରା ଲୋକକୁ ଘେରି ଛିଡ଼ା ହୋଇଥିବା ଶ୍ରେଷ୍ଠ ପିଲାମାନେ ନିଜର ଭୟ ଭାଙ୍ଗି ଆସ୍ତେ ଆସ୍ତେ ତା ପାଖକୁ ଲାଗି ଆସିଥିଲେ ଏବଂ ସେମାନଙ୍କ ଭିତରୁ

କେହି କେହି ତାର ବ୍ୟାଗ୍‌କୁ ଛୁଇଁବାକୁ ମଧ୍ୟ ଚେଷ୍ଟା କରୁଥିଲେ । ମଲମୁଣ୍ଡିଆଙ୍କ ଭିତରୁ ସବୁଠାରୁ ସାହସୀ ଲୋକଟି ବର୍ତ୍ତମାନ ପିଲମାନଙ୍କପାଖକୁ ଯାଇ ସେମାନଙ୍କୁ ଉତ୍ସାହିତ କରୁଥିଲା । ଗୋରା ଲୋକ, ଯେ କି ଭାରତୀୟମାନଙ୍କୁ ନିଜର ବନ୍ଧୁ କରି-ନେବାର ମହତ୍ତ ଉଦ୍ଦେଶ୍ୟନେଇ ଆସିଥିଲା, ପିଲମାନଙ୍କ ଆଡକୁ ଅନାଇ ସାମାନ୍ୟ ହସିଲା ଏବଂ ଏ କଥା ସେମାନଙ୍କ ପାଇଁ ଏକ ନୂତନ ପ୍ରେରଣାର କାରଣ ହେଲା । ଦୁଇଜଣ ପିଲା ଗୋରା ଲୋକର ବ୍ୟାଗ ଆଣି ତା ଭିତରେ ଥିବା ବହି ସବୁ ଦେଖିବାରେ ଲାଗିଲେ ଏବଂ ଅନ୍ୟ ଜଣେ ପିଲା ସିତାରର ଖୋଲ କପଡ଼ା ଖୋଲିବ ସେ ବିଷୟରେ ପରୀକ୍ଷା ନିରୀକ୍ଷା କରିବାକୁ ଆରମ୍ଭ କଲା । ମଲମୁଣ୍ଡିଆ ସାହସୀ ଲୋକଟି ଏଥର ଯାଇ ଗୋରା ଲୋକର ଠିକ୍ ସାମନାରେ ଚକା ପକାଇ ବସିଲା ଏବଂ କହିଲା, 'ଫଟୋ' । ଗୋରା ତା କଥା ବୁଝିପାରି ନିଜର ହିନ୍ଦୀ ଶିକ୍ଷା ବିଷୟରେ ଖୁସି ହେଲା ଏବଂ କ୍ୟାମେରା ବାହାର କରି ତାକୁ ଦେଖାଇଲା । ଲୋକଟି ଏତିକିରେ ସନ୍ତୁଷ୍ଟ ହେଲା ନାହିଁ; ତାକୁ ନିଜର ମୁହଁ ଦେଖାଇ ବିଭିନ୍ନ ମୁଦ୍ରା ସାହାଯ୍ୟରେ ବୁଝା-ଇଲା ଯେ ଗୋରା ତା'ର ଫଟୋ ଉଠାଉ । ଗୋରା ଏ କଥା ମଧ୍ୟ ବୁଝିପାରିଲା ଏବଂ ସେ କେବଳ ଭାରତୀୟମାନଙ୍କର ଭାଷା ହିଁ ନୁହେଁ, ସେମାନଙ୍କର ସାଙ୍କେତିକ ଆଚାରମାନ ବୁଝିପାରୁଥିବାରୁ ନିଜର ବୁଦ୍ଧି ଓ ବିଦ୍ୟାବତ୍ତାକୁ ବାହାବା ଦେଲା ଏବଂ ପଦ୍ମାସନରୁ ଉଠି କ୍ୟାମେରାରେ ସେଇ ଲୋକଟିର ଫଟୋ ଉଠାଇବାକୁ ପ୍ରସ୍ତୁତ ହେଲା ।

ଏତିକିବେଳେ କିନ୍ତୁ ତା' ପାଇଁ ଅନ୍ୟ ଏକ ସମସ୍ୟା ଉପୁଜିଲା । ହଠାତ୍ ସେଠାରେ ଥିବା ପିଲା ଛୁଆ ବୁଢ଼ା ସବୁ ଲୋକ ଦଉଡ଼ି ଆସି ତା ସାମନାରେ ଫଟୋ ଉଠାଇବାକୁ ଛିଡ଼ା ହେଲେ । ଏପରି କି ସେଇ ନିପୁଣ ପିଲାଟି, ଯେ କି ବର୍ତ୍ତମାନ ସିତାରର ଖୋଲ ଖୋଲିବାକୁ ସମର୍ଥ ହୋଇଥିଲା, ସିତାରକୁ ତଳେ ପକାଇ ଦେଇ ତା ଆଗରେ ଛିଡ଼ା ହେଲା । ଗୋରା କିନ୍ତୁ ହାରିବାର ଲୋକ ନ ଥିଲା । ସେ ଧୈର୍ଯ୍ୟର ସହିତ ପିଲା ଓ ବଡ଼ ଲୋକମାନଙ୍କୁ ଗୋଟିଏ ଧାଡ଼ିରେ ଛିଡ଼ା କରାଇଲା ଏବଂ ସେମାନଙ୍କର ଫଟୋ ଉଠାଇଲା । ଏ ଭିତରେ ଆଖ ପାଖରେ ଆଉ କିଛି ପିଲା ଓ ଲୋକ ଆସି ମଧ୍ୟ ପହଞ୍ଚିଗଲେ ଏବଂ ତା ଆଗରେ ନିଜର ଫଟୋ ଉଠାଇବା ପାଇଁ ଛିଡ଼ା ହେଲେ । ଗୋରା ଲୋକ ଆଶା କରିଥିଲା ଯେ ଯେଉଁମାନଙ୍କର ଫଟୋ ଉଠି ସାରିଛି ସେମାନେ ଘୁଞ୍ଚିଯିବେ, କିନ୍ତୁ ସେମାନେ ମଧ୍ୟ ନିଜ ସ୍ଥାନରେ ଅଟଳ ରହିଲେ ଏବଂ ଏଥିରେ ହାରି ନ ଯାଇ ବାକି ଲୋକଙ୍କୁ ଏକ ତୃତୀୟ ଧାଡ଼ିରେ ଠିଆ କରାଇ ଗୋରା ସେମାନଙ୍କର ଫଟୋ ନେବାର ବ୍ୟବସ୍ଥା କଲା ।

ଧୋବଧାଉଳିଆ ଲୋକଙ୍କର ଏକଥା ବିଶେଷ ଅସହ୍ୟ ହେଉଥିଲା । କିରାଣୀ ଶେଷକୁ ଆଉ ଚୁପ୍ ରହି ପାରିଲା ନାହିଁ । କହିଲା, "ଗୋରାର ବୁଦ୍ଧି ଦେଖ ! ଯଦି

ଫଟୋ ଉଠାଇବା କଥା, ଆମେ ଏତେ ଲୋକ ସଫା ସୁତୁରା ପୋଷାକ ପିନ୍ଧ ଛୁଡ଼ା ହୋଇଛୁ, ଫଟୋ କାହାର ନଉଚ କି ସେଇ ଲଙ୍ଗଳା ପିଲାଙ୍କର।" ଲେକଚରର କହିଲା, "ଆପଣମାନେ ଜାଣି ପାରୁ ନାହାନ୍ତି ଲୋକଟା କେତେ ଚାଲାକ ? ଏଇ ସବୁ ଫଟୋ ନେଇ ବିଦେଶରେ ଦେଖାଇବ, ବିକ୍ରି କରିବ । କହିବ, ଭାରତର ଲୋକମାନେ କେମିତି ଦରିଦ୍ର ଅବସ୍ଥାରେ ଅଛନ୍ତି।" ଗ୍ରାମ ନେତା କହିଲା, "ସେ ହାତରେ ଯୋଉ ଜିନଷଟା ଧରିଛୁ, ସେଇଟା କ୍ୟାମେରା କ ଜାଣ କଏ ଜାଣିଚ ? ଲୋକଙ୍କର ଫଟୋ ଉଠାଇବା ବାହାନାରେ ଆଉ କଣ ସବୁ ଫଟୋ ଉଠାଇ ନେବ।" ତା ପରେ ତଳେ ଥୁଆ ହୋଇଥିବା ଗିଟାର ଆଡ଼କୁ ହାତ ଦେଖାଇ କହିଲା, "ତଳେ ଆହୁରି ଗୋଟାଏ ବଡ଼ ଯନ୍ତ୍ର ରଖିଚ ଦେଖି ନାହାନ୍ତି ?" ଲେକଚରର କହିଲା, "ଇ. ଏମ୍. ଫଷ୍ଟରଙ୍କ ପରେ ଆଉ କେହି ଭଲ ଲୋକ ଆଉ ଭାରତ ଆସି ନାହାନ୍ତି । ଯିଏ ସବୁ ଆସୁଛନ୍ତି, ବିଟନିକ ନ ହେଲେ ହିପ୍ପି।" ଓଜଲ ଦେଖିଲା ଯେ ଲେକଚରର ନିଜର ଇଂରେଜୀ ସାହିତ୍ୟର ଜ୍ଞାନ ନେଇ କଥାକୁ ତା ନିଜ ଆଡ଼କୁ ଟାଣି ନେବାକୁ ଚେଷ୍ଟା କରୁଛି । ସେଥିପାଇଁ ସେ କହିଲା, "ଏମାନଙ୍କୁ ଭିସା କଏ ଦଉଚ କେଜାଣି ?"

ଗୋରା ଲୋକ ଯେତେ ଫଟୋ ଉଠାଇଲା, ଭିଡ଼ କମେ ସେତେ ବଢିବାରେ ଲାଗିଲା । ଏ ଭିଡ଼ ଭିତରୁ ନିଜର ଗିଟାର ଓ ବଡ଼ ବ୍ୟାଗ ସମ୍ଭାଳିବା ଗୋରା ପକ୍ଷରେ ବର୍ତ୍ତମାନ ଅସମ୍ଭବ ହେଲା ଏବଂ ଅନେକ ଚେଷ୍ଟା ସତ୍ତ୍ୱେ ବି ସେ ଆଉ ନିଜର ମୁହଁରେ ହସ ରଖି ପାରିଲା ନାହିଁ । ଆଉ କେତୋଟି ଫଟୋ ଉଠାଇ ସାରିବା ପରେ ଲୋକମାନଙ୍କର ଭିଡ଼ ଓ ଉତ୍ସାହ କମି ନ ଥିବା ଦେଖି ଗୋରା ଏ ଥରକ ସିଧା ସଳଖ ବିରକ୍ତ ହେଲା ଏବଂ କ୍ୟାମେରାକୁ ବନ୍ଦ କରି ବ୍ୟାଗ ଭିତରେ ରଖି ଦେଲା । ଏ କଥା ଦେଖି ଫଟୋ ଉଠାଇବାକୁ ଆସିଥିବା ଲୋକ ସବୁ ନିରାଶ ହୋଇ ସେଠାରୁ ଘୁଞ୍ଚିଗଲେ, କିନ୍ତୁ ଛୋଟ ପିଲାମାନେ ତା ଚାରିପାଖେ ଘେରି ରହି ନାଚିବାକୁ ଲାଗିଲେ । ଗୋରା ଏ କଥା ଦେଖି ଖୁସି ହେଲା ଏବଂ ପୁଣି ସାମାନ୍ୟ ହସିଲା । ଏଥରକ ପିଲାମାନେ ତାକୁ ମାଙ୍କଡ ମାଙ୍କଡ଼ କହି ଚିଡ଼ାଇବାକୁ ଚେଷ୍ଟା କଲେ, କିନ୍ତୁ ଗୋରା ଏ କଥାର ଅର୍ଥ ବୁଝି ନ ପାରି ସେମାନଙ୍କୁ ନିଜେ ତାଳି ମାରି ଉତ୍ସାହିତ କରିବାରେ ଲାଗିଲା ।

ଭାଗ୍ୟକୁ ଏଇ ସମୟରେ ସେଠାରେ ବସ ଆସି ଅଟକିଲା । ପିଲାମାନେ ଗୋରା ପାଖରୁ ଚାଲିଗଲେ ଏବଂ ଠେଲାପେଲା କରି ଅପେକ୍ଷା କରୁଥିବା ଲୋକମାନେ ବସ ଭିତରକୁ ପଶିଲେ । ବ୍ୟାଗ, କ୍ୟାମେରା ଓ ଗିଟାରକୁ ସମ୍ଭାଳି ଗୋରା ପକ୍ଷରେ

ଭିଡ଼ ଦେଇ ବସ ଭିତରେ ପଶିବା ସମ୍ଭବ ହେଲା ନାହିଁ ଏବଂ ତାକୁ ଛାଡ଼ି ବସ ଯିବାକୁ ଆରମ୍ଭ କଲା । ବର୍ତ୍ତମାନ କଣ୍ଡକ୍ଟରର ସାମାନ୍ୟ ଦୟା ହେଲା । ବସକୁ ଅଟକାଇ ସେ ଗୋରାକୁ ପାଟିକରି କହିଲା, "ଆଁ କରି ଚାହିଁ ରହିଛୁ କଣ, ଉଠିଆ ।" ଏ କଥା ମଧ୍ୟ ଗୋରାର ବୋଧଗମ୍ୟ ମନେ ହେଲା ଏବଂ ସେ ଦଉଡ଼ି ଯାଇ ବସ ଉପରକୁ ଚଢ଼ିଲା ।

ବସ ଭିତରେ ଯଦିଓ କୌଣସି ଶ୍ରେଣୀ ବିଭାଗ ନ ଥିଲା, ଏକ ଅନୌପଚାରିକ ନିୟମ ମୁତାବକ ଧୋତି ଧାଉଳିଆ ଓ ମଳି ମୁଣ୍ଡିଆ ଲୋକମାନେ ତା ଭିତରେ ନିଜ ନିଜର ଅଲଗା ଅଲଗା ସ୍ଥାନ ସୁରକ୍ଷିତ କରି ଦେଇଥିଲେ । ଗୋରା ଭିତରେ ପଶିବାରୁ ଧୋତି ଧାଉଳିଆମାନେ ତାଙ୍କ ଆଗରେ ବସିଥିବା ଗୋଟିଏ ମଳିମୁଣ୍ଡିଆକୁ ଉଠାଇ ଗୋରାକୁ ସେଠାରେ ବସାଇଦେଲେ । ଗୋରା ସେମାନଙ୍କ ଆଡ଼କୁ ଚାହିଁ କୃତଜ୍ଞତାର ହସ ହସିଲା ଏବଂ ଧନ୍ୟବାଦ ଜଣାଇଲା । ଏ ଥରକ ସେମାନେ ଗୋରା ସହିତ ଆଳାପ କରିବାକୁ ଚେଷ୍ଟା କଲେ । ଲେକଚରର ନିଜର ଇଂରେଜୀ ଉଚ୍ଚାରଣକୁ ଯଥାସମ୍ଭବ ବିଦେଶୀସ୍ତ କରିବାକୁ ଚେଷ୍ଟାକରି ଗୋରାକୁ ତାର ନାଁ ଗାଁ ଆଦି ପଚାରିଲେ । ଗୋରା ଯଦିଓ ଭାରତୀୟ କଥାବାର୍ତ୍ତାକୁ ମୁଦ୍ରା ଇତ୍ୟାଦି ସାହାଯ୍ୟରେ ସାମାନ୍ୟ ବୁଝିବାକୁ ସମର୍ଥ ହେଉଥିଲା, ଲେକଚରରର ଅଦ୍ଭୁତ ଉଚ୍ଚାରଣର ଇଂରେଜୀ ହଠାତ୍ ବୁଝି ପାରିଲା ନାହିଁ ଏବଂ ବାରମ୍ବାର କ୍ଷମାଯାଚନା ଇତ୍ୟାଦି ପରେ ନିଜର ଯଥାସମ୍ଭବ ପରିଚୟ ଦେଲା । ଠିକାଦାର ଓ କିରାଣୀ ମଧ୍ୟ ନିଜର ଇଂରେଜୀକୁ ଯେତେ ମାର୍ଜିତ କଲେ ମଧ୍ୟ ଗୋରାର ବୋଧଗମ୍ୟ କରାଇ ପାରିଲେ ନାହିଁ ଏବଂ ଶେଷରେ କଥୋପକଥନରୁ କ୍ଷାନ୍ତ ହେଲେ । ସମସ୍ତେ ତା ସହିତ କଥାବାର୍ତ୍ତାରୁ ନିବୃତ୍ତ ହୋଇଯିବାର ଦେଖି ଗୋରା ବସ ଭିତରେ କୌଣସି ଯୋଗାଯୋଗ କରି ପାରିବ କି ନାହିଁ ସେ ବିଷୟରେ କିଛି ସମୟ କଳ୍ପନା କଲା ଏବଂ ଶେଷରେ ବ୍ୟାଗରୁ ବହି ବାହାର କରି ଭାରତବର୍ଷ ବିଷୟରେ ଜ୍ଞାନ ଆହରଣ କରିବାକୁ ପୁନଃ ପ୍ରଚେଷ୍ଟା କଲା ।

ଓକିଲ କହିଲା, "ଏ ଲୋକ ଯଦିଓ ଆମେରିକାରୁ ଆସିଛି ବୋଲି କହୁଛି, ଜଣାଯାଉଛି ମିଛ । ନ ହେଲେ ଇଂରେଜୀ ବୁଝିପାରନ୍ତା ନାହିଁ କେମିତି ?" ଲେକ୍‌ଚରର ସେମାନଙ୍କୁ ନିଜର ଅଗାଧ ଜ୍ଞାନରୁ ସାମାନ୍ୟ ବିତରଣ କରିବା ଭଙ୍ଗୀରେ କହିଲା, "ରେଡ଼ ଇଣ୍ଡିଆନଙ୍କୁ ଛାଡ଼ି ଦେଲେ ଆମେରିକାନ ବୋଲି କୌଣସି ଲୋକ ନାହାନ୍ତି । ଆମେରିକାର ସବୁ ଲୋକ ତ ବାହାରୁ କୋଉଠୁ କୋଉଠୁ ଆସିଛନ୍ତି । ଇଂଲଣ୍ଡରୁ, ନ ହେଲେ ଆୟାର୍ଲ୍ୟାଣ୍ଡ ସ୍କଟଲ୍ୟାଣ୍ଡରୁ । ଜର୍ମାନୀ ଇଟାଲୀରୁ ମଧ୍ୟ ଅନେକ ଲୋକ ଆସି ଆମେରିକାରେ ରହିଛନ୍ତି । ମାଫିଆ ବୋଲି ଆମେରିକାରେ ଯୋଉ

ଅନୁଷ୍ଠାନଟି ଅଛି, ସେଇଟି ଇଟାଲୀୟମାନେ କରିଛନ୍ତି ।” କିରାନୀ ପଚାରିଲା, “ଏ ଲୋକଟି କୋଉଠୁ ଆସିଥିବ ?” ଲେକଚରର ଗୋରା ଆଡ଼କୁ ବହୁତ ସମୟ ଏପାଖ ସେପାଖକୁ ଦେଖିବା ପରେ କହିଲା, “ନା, ଏ ଲୋକ ଇଂରେଜ ନୁହେଁ । କଣ୍ଟି-ନେଣ୍ଟରୁ ଆସିଥିବ ।” ଲେକଚରର ପୁଣି ଆଲୋଚନାକୁ ଏପରି ଏକତ୍ରଫିଆ କରି ନେଉଥିବାର ଦେଖି ଠିକାଦାର କହିଲା, “ଆମ ମଞ୍ଜୁସା ଯଦି ଥାଆନ୍ତେ, ଏ ଲୋକକୁ ଦି' ମିନଟ ଦେଖି ତା' ବିଷୟରେ ସବୁ କଥା ପୁଙ୍ଖ କହି ଦେଇ ପାରିଥାଆନ୍ତେ । ସେତେବେଳେ ବିଲାତରେ ଏଗାର ବର୍ଷ ରହିଲେଣି ତ ।” କିରାନୀ, ଯେ କି ଟିକିଏ କମ୍ ବୁଦ୍ଧି ଲୋକ ଥିଲା, ଆଶ୍ଚର୍ଯ୍ୟ ହୋଇ କହିଲା, “କ'ଣ କହିଲେ, ଏଗାର ବର୍ଷ ? କ'ଣ ସେଠି ଡାକ୍ତରୀ କରୁଛନ୍ତି ?” ଠିକାଦାର କହିଲା, “ନାଇଁ, ସାଇଣ୍ଟିଷ୍ଟ । ହପ୍ତାକୁ ଦି' ହଜାର ପାଉଣ୍ଡ ଦରମା । ଲଣ୍ଡନରେ ଘର କିଣି ସାରିଲେଣି ।” ଓକିଲ କହିଲା, “ଆମ ପାଖ ଗାଁର ଜଣେ ଡାକ୍ତର ବି କୁଏଟରେ ଯାଇ ତିନିବର୍ଷ ହେଲା ରହିଲାଣି । ବହୁତ ପଇସା ସେଠାରେ ।” ଲେକଚରର କହିଲା, “ବୁଝିଲେ ଆଜ୍ଞା, ମୁଁ ବି ଅକ୍ସଫୋର୍ଡ ୟୁନିଭର୍ସିଟିକୁ ଫେଲୋସିପ ପାଇଁ ଦରଖାସ୍ତ କରିଛି । ଯଦି ହୋଇଯାଏ, ଏଇ ଜୁଲାଇ ମାସରେ ଚାଲିଲି ।”

ଗୋରା ବହିରୁ ମୁହଁ ଉଠାଇ ପଚାରିଲା, “ଏଠାରୁ କର୍ଣ୍ଣାଟକା କେତେ ଦୂର ?” ଲେକ୍‌ଚରର କହିଲା, “ଅନେକ ଦୂର । ଓଡ଼ିଶା ଯେମିତି ଗୋଟିଏ ପ୍ରଦେଶ କର୍ଣ୍ଣାଟକ ମଧ୍ୟ ସେ ଭଳି ଦକ୍ଷିଣରେ ଗୋଟିଏ ପ୍ରଦେଶ ।” ଗୋରା କହିଲା, “ନା, ନାଁ, ମୁଁ କର୍ଣ୍ଣାଟକା ମନ୍ଦିର କଥା କହୁଚି । ଏଇ ପାଖରେ କୋଉଠି ଅଛି ବୋଲି ଏଇ ବହିରେ ଲେଖା ହୋଇଚି ।” ଲେକ୍‌ଚରର୍ ଏଥର ଗୋରାର ଭୁଲ୍ ଜାଣି ପାରିଲା ଏବଂ ସାହେବୀ ଢୋଙ୍ଗରେ କହିବା ପାଇଁ ଚେଷ୍ଟା କରି ନିଜସ୍ୱ ଇଂରେଜୀରେ କହିଲା, “ଆପଣ ବୋଧହୁଏ କୋଣାର୍କ ମନ୍ଦିର କଥା କହୁଛନ୍ତି । ସେ ମନ୍ଦିରଟି ଏଠାରୁ ବେଶି ଦୂର ନୁହେଁ ।” ଏହାପରେ ଲେକ୍‌ଚରର ତାକୁ କୋଣାର୍କର ଐତିହାସିକତା ଇତ୍ୟାଦି ବିଷୟରେ ବୁଝାଇଲା । ଗୋରା ଏଥର ତା କଥା ଠିକ୍ ଠିକ ବୁଝି ପାରୁଥିବା ଦେଖି ସେ ଗୋରାକୁ ତାର ଦରମା, ତା କ୍ୟାମେରାର ଦାମ, ତା ଦେଶକୁ ଫେରି ଯିବା ଆଗରୁ ସେ ତାର ଜାମା କୁର୍ତ୍ତା ସବୁ ବିକ୍ରି କରିବ କି ନାହିଁ, ଏ ସବୁ ବିଷୟରେ ପଚାରିଲା । ଗୋରା ମଧ୍ୟ ତାକୁ ଭାରତ ବିଷୟରେ ବିଭିନ୍ନ ପ୍ରଶ୍ନ ପଚାରି ଚେଷ୍ଟାକଲା ନିଜର ଜ୍ଞାନକୁ ପରିବର୍ଦ୍ଧିତ କରିବାକୁ ।

ଗୋରା ସହିତ କଥୋପକଥନର ସଫଳତା ପରେ ଲେକ୍‌ଚରର ଗର୍ବର ସହିତ ଅନ୍ୟମାନଙ୍କୁ ଅନାଇଲା ଏବଂ କହିଲା, “ଏଇ ଗୋରାଲୋକମାନେ ସବୁ ବିଷୟରେ

ଅଯଥା କୌତୂହଳୀ । ଭାରତବର୍ଷରେ କିଏ କ'ଣ କାହିଁକି ସବୁ ବିଷୟରେ ଜାଣିବାକୁ ଇଚ୍ଛା ।” ଓକିଲ କହିଲା, “ଗୋରା ଲୋକଙ୍କର ବୁଦ୍ଧି କମ । ଦେଖୁ ନାହାନ୍ତି କୋଣାର୍କ କର୍ଣ୍ଣାଟକ ଭିତରେ ପ୍ରଭେଦ ଜାଣି ପାରୁନାହିଁ !” ଠିକାଦାର ବସ ବାହାରକୁ ପାନପିକ ପକାଉ ପକାଉ କହିଲା, “ଏଇ ଗୋରା ଲୋକ ଗୁଡ଼ାକ ବଡ଼ ଅପରିଷ୍କାର । ମଉସା କହୁଥିଲେ, ଶୀତ ଦିନେ ଏମାନଙ୍କର ଗାଧୋଇବା ନାଁ ନ ଥାଏ । ଛ ମାସ ଶୀତ ଦିନ ଗଲେ ଯାଇ ଏମାନେ ଗାଧୁଆ ଘରକୁ ଯାନ୍ତି ।” କିରାଣି କହିଲା, “ବିଲାତରେ କୁଆଡ଼େ କେହି କାହାରିକି ପଚାରନ୍ତି ନାହିଁ । ବାପା ମା ପିଲା ଝିଲା ଅଲଗା ଅଲଗା ରହନ୍ତି । କିଏ ମଲା ଗଲା କାହାରିକି ଖବର ନ ଥାଏ ।” ଗ୍ରୁପଟି, ଯେ କି ଇଂରେଜୀ କଥାବାର୍ତ୍ତା ଠିକ୍ ବୁଝି ପାରୁ ନ ଥିଲା, ଏବଂ ଯାହାର ଶରୀରର ଗଠନ ଗୋରା ଲୋକ ଭଳି ଥିଲା, ଲେକଚରରଙ୍କୁ ପଚାରିଲା, “ସେ କ'ଣ ତାର ଜିନ ପ୍ୟାଣ୍ଟ ସବୁ ବିକି କରିବାକୁ ରାଜି ହେଉଛି ?” ଲେକଚରର କହିଲା, “ବିକି କରିପାରେ, କିନ୍ତୁ ବେଶି ଦାମ ମାଗିବ ଜଣା ପଡୁଛି ।” ଠିକାଦାର କହିଲା, “ଯଦି କ୍ୟାମେରାଟା ହଜାର ଟଙ୍କାରେ ଦେଇ ଦିଅନ୍ତା, ମୁଁ ନେଇ ନିଅନ୍ତି ।” ଓକିଲ, ଯାହାର ନିଜର ଆଖି କ୍ୟାମେରା ଉପରେ ଥିଲା, ତାକୁ ବୁଝାଇଲା, “ଏ ଲୋକର ପୁରୁଣା କ୍ୟାମେରାରେ କାହିଁକି ପଶିବେ ? ଆପଣଙ୍କ ମଉସାଙ୍କୁ ଲେଖନ୍ତୁ ନୂଆ କ୍ୟାମେରା ପାଇଁ ।” ଏହା ପରେ ସେମାନେ ବିଦେଶୀ ଲୋକମାନଙ୍କର ଚରିତ୍ର, ଚାଲିଚଳନ, ବୁଦ୍ଧି ବୃତ୍ତି, ଆଚାର ବ୍ୟବହାର ଇତ୍ୟାଦି ବିଷୟରେ ଆଲାପ ଆଲୋଚନା କରି ଯେଉଁସବୁ ନିଷ୍କର୍ଷରେ ପହଞ୍ଚିଲେ ସେଗୁଡ଼ିକ ହେଲା ; ଗୋରାମାନେ ସ୍ୱାର୍ଥପର, ଜଡ଼ବାଦୀ, ଆବେଗହୀନ, ଅର୍ଥ ଲିପ୍ସୁ ଓ ବ୍ୟକ୍ତିବାଦୀ ।

ଏଇ ସମୟରେ ହଠାତ୍ ଝଟ୍‌କା ଦେଇ ବସ ବନ୍ଦ ହେଲା । କ୍ଲିନର କହିଲା “ଆକ୍‌ସିଡେଣ୍ଟ” ଏବଂ ସମସ୍ତେ ତଳକୁ ଓହ୍ଲାଇ ପଡ଼ିଲେ । ଜନବସତିରୁ ଦୂର, ଅପନ୍ତରା, ଦି ପାଖ ବିଲ ମଝି ରାସ୍ତାରେ ବସ ଠିଆ ହୋଇଥିଲା ଏବଂ ଧକ୍କା ଲାଗି ଗାଉଁଲି ଲୋକଟି ରାସ୍ତା କଡ଼ରେ ପଡ଼ିଥିଲା । ତାର ଚେତା ନ ଥିଲା ଏବଂ ତାର ମୁଣ୍ଡ ଫାଟି ରକ୍ତ ବହୁଥିଲା । ଗୋରାଲୋକ, ଡ୍ରାଇଭର, କ୍ଲିନର ସମେତ ସବୁ ଲୋକ ତାକୁ ଘେରି ଠିଆ ହେଲେ । ମଲା ମୁଣ୍ଡିଆ ଲୋକମାନେ ଭୟରେ ଏବଂ ଧୋବଧାଉଳିଆ ଲୋକମାନେ ଦେହ ହାତ ଜାମା ପଟାରେ କାଦୁଅ ରକ୍ତ ଲାଗିଯିବ ବୋଲି ତା ପାଖକୁ ଗଲେ ନାହିଁ । ଶେଷକୁ ଡ୍ରାଇଭର ଯାଇ ଲୋକକୁ ଓଲଟାଇ ତାର ରକ୍ତ ବହୁଥିବା ପାଖ ମୁଣ୍ଡକୁ ତଳକୁ କରିଦେଲା । ଏଥର କି ଲୋକଟି ଶୋଇଥିବା ଭଳି ଦେଖାଗଲା ଏବଂ ଆଉ ଦେଖଣାହାରିଙ୍କର ଭୟ ଅଥବା ସହାନୁଭୂତି ଉଦ୍ରେକ କଲାନାହିଁ । ଇଉନିଫର୍ମ ଉପରେ ହାତ ପୋଛୁ ପୋଛୁ ଡ୍ରାଇଭର କହିଲା, “କିଛି ହୋଇ ନାହିଁ । ଟିକିଏ

ପବନ ବାଜିଲେ ଠିକ ହୋଇ ଯିବ ।" ଏ କଥାରେ ସମସ୍ତେ ଆଶ୍ୱସ୍ତ ହେଲେ । କେବଳ ଗୋରାଲୋକ ଡକ୍ଟର ଡକ୍ଟର ବୋଲି ପାଟି କଲା । ତା କଥାକୁ ଅବଜ୍ଞା କରିଦେଇ ଲେକଚରର କହିଲା, "କଣ କରିବା ?" ଓକିଲ କହିଲା, "ଏଠି ବେଶି ସମୟ ଅଟକିଲେ ପୋଲିସ କେସ ହେବ । ଆମ ସମସ୍ତଙ୍କୁ ସାକ୍ଷୀ ଦେବାକୁ ପଡ଼ିବ । ଦି ବର୍ଷ କାଳ କୋର୍ଟକୁ ଦଉଡ଼ିବାକୁ ହେବ । ତା କଥା ଶୁଣି ଅଧାଲୋକ ସେଠାରୁ ଯାଇ ବସ ଭିତରେ ବସିଲେ । ଠିକାଦାର ଡ୍ରାଇଭରକୁ ପଚାରିଲା, କ'ଣ କିଛି ସିରିଅସ୍ ନୁହଁ ତ ? ଡ୍ରାଇଭର କହିଲା, "ନାଇଁ, ସେ କିଛି ନୁହେଁ । ବସ ତା ଦେହରେ ବାଜି ନାହିଁ । ବସକୁ ଦେଖି ଲୋକଟା ଦଉଡ଼ିବାକୁ ଆରମ୍ଭ କଲା ଆଉ ମୂର୍ଚ୍ଛି ପଡ଼ିଲା । ମନକୁ ମନ ଠିକ ହୋଇଯିବ । ଲେକଚରର କହିଲା, "ତା ହେଲେ ଆଉ ମଝି ରାସ୍ତାରେ ବସ ଅଟକାଇ ଗହଳି କରି ଲାଭ ନାହିଁ ।" କିରାନୀ ହାତଘଡ଼ିକୁ ଦେଖି କହିଲା, "ବହୁତ ଡେରି ହୋଇ ଗଲାଣି । ଏମିତରେ ବସ ବି ତ ଅନେକ ଡେରିରେ ଆସିଥିଲା !"

ଏଥର କ ଧୀରେ ଧୀରେ ସମସ୍ତେ ଆସି ବସ ଭିତରେ ବସିଲେ । ବସ ଛାଡ଼ିବା ପାଇଁ ଡ୍ରାଇଭର ଦି ଥର ହର୍ଣ୍ଣ ଦେଲା । ସମସ୍ତେ ଦେଖିଲା ବେଳକୁ ଗୋରାଲୋକ ସେ ପର୍ଯ୍ୟନ୍ତ ତଳେ ପଡ଼ିଥିବା ଲୋକଟି ପାଖରେ ଛିଡ଼ା ହୋଇ ରହିଥିଲା । ଲେକଚରର ବସ ଉପରୁ ତାକୁ ପାଟି କରି କହିଲା, "ଚାଲି ଆସ । ବସ ଏଥର କ ଛାଡ଼ିବ ।" ଗୋରା ଲୋକ ପୁଣି ଡାକ୍ତର ଡାକ୍ତର ବୋଲି କହିଲା, କିନ୍ତୁ ସେ ଜାଗାରୁ ଘୁଞ୍ଚିଲା ନାହିଁ । ଠିକାଦାର ଓକିଲ ଛାଡ଼ି ସମସ୍ତେ ଏଥର କ ତାକୁ ପାଟିକରି ଡାକିଲେ ଏବଂ ଶୀଘ୍ର ବସରେ ଚଢିବାକୁ କହିଲେ । ବର୍ତ୍ତମାନ କିନ୍ତୁ ଗୋରା ଲୋକ ସେମାନଙ୍କର କୌଣସି କଥା ବୁଝି ପାରିଲା ନାହିଁ ଏବଂ ନିଜ ଜାଗାରେ ଛିଡ଼ା ହୋଇ ରହିଲା । ବିରକ୍ତିରେ ଲେକଚରର ଗୋରାର ସୀତାରକୁ ଟିରିକା ଦେଇ ତଳକୁ ପକାଇ ଦେଲା, କହିଲା, "ଯିଏ ଏ ମ୍ଳେଚ୍ଛ ପାଇଁ ଆଉ ଅଟକିବ ? ଚାଲ ।" ଓକିଲ ବି କହିଲା, "ଡ୍ରାଇଭର ବାବୁ, କିଛି ଭୟ ନାହିଁ, ଚାଲ ।" ଆଉ ଦି ଥର ଅଯଥା ହର୍ଣ୍ଣ ଦେଇ ଡ୍ରାଇଭର ବସ ଷ୍ଟାର୍ଟ କଲା ଏବଂ ଗାଡ଼ି ଆଗକୁ ଚାଲିଲା । ସମସ୍ତେ ପଛକୁ ଅନାଇ ଚୁପ୍ ଚାପ୍ ଗୋରାକୁ ଦେଖିବାରେ ଲାଗିଲେ ଏବଂ ସେଇ ଅଦ୍ଭୁତ ଲୋକଟିର କାର୍ଯ୍ୟକଳାପ ଦେଖି ମନେ ମନେ ହସିଲେ । ଅଳ୍ପ ସମୟରେ ବସ ବାଙ୍କ ମୋଡ଼ିଲା ଏବଂ ଏଇ କୌତୁକ ପୂର୍ଣ୍ଣ ଦୃଶ୍ୟଟି ମଧ୍ୟ ବର୍ତ୍ତମାନ ଦୃଷ୍ଟି ଅଗୋଚର ହୋଇଗଲା ।

କିଛି ସମୟର ନୀରବତା ପରେ ପୁଣି କଥାବାର୍ତ୍ତା ଆରମ୍ଭ ହେଲା । ଠିକାଦାର କହିଲା, "ମୁଁ କହୁ ନ ଥିଲି କେମିତି ଗୋରା ଲୋକମାନେ ପର କାମରେ ମୁଣ୍ଡ ଖେଳାନ୍ତି ।

# ପଡ଼ୋଶୀ

ବଦଳିରେ ଆସି ନୂଆ କଲେଜରେ ଯୋଗ ଦେବା ପରେ ତ୍ରିଭୁବନ ଭାବିଥିଲା ଯେ ନୂଆ ସହର ତାକୁ ଭଲ ଲାଗିବ । କିନ୍ତୁ ଏଠାରେ ଦୁଇମାସ ରହିବା ପରେ ବି ତ୍ରିଭୁବନ ତାର ନୂଆ ପରିବେଶରେ ମନ ଲଗାଇ ପାରିଲା ନାହିଁ । ତାର କଲେଜ, ସହକର୍ମୀ ଓ ଛାତ୍ରମାନେ, ଏପରିକି ତାର ଭଡ଼ାଘର ଓ ପଡ଼ୋଶୀମାନେ ଏ ପର୍ଯ୍ୟନ୍ତ ତାକୁ ଅନାତ୍ମୀୟ ବୋଧ ହେଉଥିଲେ ଏବଂ ସେ କୌଣସି କାମରେ ମନଯୋଗ କରି ପାରୁ ନ ଥିଲା । ତାର ପୁରୁଣା କଲେଜ ଓ ସହର ତାର ବାରମ୍ବାର ମନେ ପଡ଼ୁଥିଲା, ଯେଉଁଠାରେ ସେ ପାଞ୍ଚ ବର୍ଷ କଟାଇ ଆସିଥିଲା । ସେ କେବଳ ଏଇ ଆଶାରେ ରହିଥିଲା ଯେ କ୍ରମେ କ୍ରମେ ଏଇ ନୂଆ ଜାଗାରେ ତାର ମନ ଲାଗିଯିବ ।

ତ୍ରିଭୁବନର ସଂସାର ସରଳ ଓ ସାଦାସିଧା ଥିଲା; କିଛି ବି ବିବିଧତା ନ ଥିଲା ତାର ଅବିବାହିତ ଜୀବନ ଯାପନରେ । ସକାଳେ ସେ ଷ୍ଟୋଭରେ ଚା ତିଆରି କରି ପିଉଥିଲା, ହାତରେ ଜଳଖିଆ ତିଆରି କରୁଥିଲା ଏବଂ ରାତିରେ କଲେଜ ମେସ୍‌ରେ ଯାଇ ଖାଉଥିଲା । ତାର ବ୍ୟସନ ଭିତରେ ଥିଲା ପ୍ରତିଦିନ ଦୁଇଟି ଖବର କାଗଜ କିଣି ତାକୁ ଆମୂଳଚୂଳ ପଢ଼ିବା । ସିଧା ସଳଖ ସମ୍ବାଦ ଭିତରୁ ଗୂଢ଼ ଓ ସୂକ୍ଷ୍ମାତିସୂକ୍ଷ୍ମ ରାଜନୈତିକ ରହସ୍ୟ ବାହାର କରିବା ତାର ଏକ ନିଶା ଥିଲା, କିନ୍ତୁ ଏଇ ନୂଆ ସହରରେ ତାର ଜଣା ଶୁଣା କେହି ସେ ବିଷୟରେ ଆଗ୍ରହୀ ନ ଥିବାରୁ ତ୍ରିଭୁବନ ନିରାଶ ହେଉଥିଲା । ତାର ଅନ୍ୟ ନୈରାଶ୍ୟ ଥିଲା ଯେ ପୂର୍ବ ସହର ଭଳି ଏଠାରେ ତାର ଘରକୁ ତାର ସହକର୍ମୀମାନେ କ୍ଲବ ଭଳି ବ୍ୟବହାର କରୁ ନ ଥିଲେ ଏବଂ ସେଥିପାଇଁ ତାର ସନ୍ଧ୍ୟା ସବୁ ବନ୍ଧୁ ଓ ବୈଚିତ୍ର୍ୟହୀନ ଥିଲା । ସବୁ ଜାଗାରେ ଅବିବାହିତ ଲୋକର ଘର ତାର ବନ୍ଧୁମାନଙ୍କର ଆଡ୍‌ଡ଼ା ସ୍ଥଳୀ ହୋଇଥାଏ, କିନ୍ତୁ ତାର ଘର ଏ ନିୟମର ବ୍ୟତିକ୍ରମ ଥିଲା ।

ବିବାହ କରିବ ନାହିଁ ବୋଲି ସେ ଅନେକ ଦିନରୁ ଏକ ଦୃଢ଼ ନିଷ୍ପତ୍ତି ନେଇଥିଲା । ଏଇ ନିୟମର ଅଟଳତା ବିଷୟରେ ବର୍ତ୍ତମାନ ସେ ସନ୍ଦିହାନ ହେବାକୁ ଲାଗିଲା । ବୈବାହିକ ଜୀବନ ତାର ତାତ୍କାଳିକ ଜୀବନଠାରୁ ଶ୍ରେୟସ୍କର ହୋଇପାରେ,

ଏ ଭଳି ଅଦ୍ଭୁତ ଭାବନା ମଧ୍ୟ ତା ମନରେ ଉପୁଜିଲା, ଯାହା ତ୍ରିଭୁବନ ପାଇଁ ଆଦୌ ପ୍ରୀତିକର ନ ଥିଲା । ବିବାହ ବନ୍ଧନର ସମସ୍ତ ଚିନ୍ତାକୁ ମନ ଭିତରୁ ଦୂର କରି ସେ ନିଜର ପରିସ୍ଥିତି ସହିତ ମେଳ ଖାଇବାକୁ ଚେଷ୍ଟା କଲା ।

ନିଜ ଜୀବନକୁ ପୂର୍ବ ଭଳି ସଜାଇବାରେ ବ୍ୟର୍ଥ ହୋଇ ଶେଷରେ ତ୍ରିଭୁବନ ସ୍ଥିର କଲା ଯେ ସେ ଅନ୍ୟ ଜାଗାକୁ ବଦଳି ପାଇଁ ଦରଖାସ୍ତ କରିବ । ଏଥିପାଇଁ ସେ ନିଜର ସ୍ୱାସ୍ଥ୍ୟ ଓ ବାପ ମାଙ୍କର ବାର୍ଦ୍ଧକ୍ୟର ବାହାନାରେ ବଦଳିର ଅର୍ଜି ଦେଲା । କିନ୍ତୁ ସେ ଖୁବ୍ କମ ଦିନ ପୂର୍ବରୁ ସେଠାରେ ଯୋଗ ଦେଇ ଥିବାରୁ ପ୍ରିନ୍ସିପାଲ ତାର ଦରଖାସ୍ତକୁ ଉପରକୁ ପଠାଇବାକୁ ରାଜି ହେଲେ ନାହିଁ । ତ୍ରିଭୁବନ ଭାବିଲା ସେ ପ୍ରିନ୍ସିପାଲଙ୍କ ସହିତ ଏଇ ଆଳିରେ ଏକ କଳହର ସୂତ୍ରପାତ କରି ସେ କିଛି ଦିନ ନିଜର ଖାଲି ସମୟ ଅତିବାହିତ କରିବ । କିନ୍ତୁ ଏ କଥା ତାକୁ ବିଶେଷ ଚିତ୍ତାକର୍ଷକ ବୋଧ ହେଲା ନାହିଁ ଏବଂ ତ୍ରିଭୁବନ ନିଜକୁ ଏହି ଚିନ୍ତାରୁ ନିବୃତ୍ତ କଲା । ତେବେ ସେ ପ୍ରିନ୍ସିପାଲଙ୍କୁ ରାଜି କରାଇଲା ଯେ କିଛି ମାସ ପରେ ସେ ଏ ବିଷୟରେ ପୁନର୍ବିଚାର କରିବେ । ସେ ଏଥରକ ତାର ବିରକ୍ତିକର ଅବସ୍ଥିତିକୁ ସାମାନ୍ୟ ରଙ୍ଗ ଦେବାପାଇଁ ବିଭିନ୍ନ ପ୍ରକାରର ଜୀବନ ପ୍ରଣାଳୀ ଅବଲମ୍ବନ କରିବା କଥା ଭାବିଲା, କିନ୍ତୁ କୌଣସିଟି ତାର ମନୋପଯୋଗୀ ହେଲା ନାହିଁ । ଶେଷରେ ସେ ତାର ଭଡ଼ାଘରର ସ୍ଥିତିକୁ ଏ ସବୁ ପାଇଁ ଦାୟୀ କଲା ଏବଂ କଲେଜର କିରାଣୀକୁ କହିଲା, "ମୋ ପାଇଁ ଆପଣ ଯୋଉ ଘରଟି ଠିକ୍ କରିଥିଲେ, ସେଇଟି ମତେ ସୁବିଧା ହେଉ ନାହିଁ । ଆଉ କୋଉଠି ଘର ଖଣ୍ଡେ ମିଳିବ କି ?"

ଘର ଖୋଜି ବାହାର କରିବା ବିଷୟରେ କିରାଣୀ ନିଜକୁ ଏକ ବିଶେଷଜ୍ଞ ବୋଲି ଭାବୁଥିଲା ଏବଂ ତ୍ରିଭୁବନର ଏଇ ସାମାନ୍ୟ ଅନୁରୋଧ ଶୁଣି କହିଲା, "ମୋ ହାତରେ ଏବେ ତିନିଟା ଘର ଅଛି । ଆପଣ ଯୋଉ ଭଳି ଘର ଚାହିଁବେ, ମିଳିଯିବ । ଏବର ଘରଟା କଣ ଖରାପ ପଡ଼ିଲା ?" ତ୍ରିଭୁବନ କହିଲା, "ନାଇଁ, ଟିକେ ସେ ଅଂଚଳରେ ସାଙ୍ଗ ସାଥି ନାହାନ୍ତି ।" କିରାଣୀ କହିଲା, "ତେବେ ଆପଣଙ୍କୁ ମାର୍କେଟ ପାଖ ଘରଟା ଦେଇ ଦେବି । ସବୁ ଆଡ଼କୁ ସୁବିଧା ପଡ଼ିବ । କେବେ ଆସି ଘର ଦେଖିବେ ?" କିରାଣୀ କାଗଜ ଉପରେ ନକ୍ସା ଆଙ୍କିଲା ଏବଂ ତା ପାଖରେ ବସି ତ୍ରିଭୁବନ ଘରର ଆକାର ପ୍ରକାର ବିଷୟରେ ଆଲୋଚନା କଲା । ଶେଷରେ ଠିକ୍ ହେଲା ଯେ ଆସନ୍ତା ରବିବାର ଦିନ ଯାଇ ସେମାନେ ନୂଆ ଘର ଦେଖିବେ ।

ସେ ଦିନ କ୍ଲାସ ଶୀଘ୍ର ସରିଗଲା ଏବଂ ଆଉ କିଛି କାମ ନଥିବାରୁ ତ୍ରିଭୁବନ ଘରକୁ ଫେରି ଆସିଲା । ଚା ତିଆରି କରି ସେ ଦି କପ ପିଇଲା ଓ ସକାଳର ଖବର

କାଗଜକୁ ଆଉ ଥରେ ପଢ଼ିଲା । ଯଦି ଓ ଅନେକ ସମ୍ବାଦ ପଛରେ ସେ ବିଭିନ୍ନ ପ୍ରକାରର ବ୍ୟାଖ୍ୟାର ସମ୍ଭାବନା ଦେଖିବାକୁ ପାଇଲା, ଏଇ ଜ୍ଞାନକୁ କାହାର ସହିତ ବିନିମୟ କରି ପାରୁ ନ ଥିବାରୁ ସେ ତାର ଖବର କାଗଜ ପଢ଼ିବାରେ ଆଉ ଉତ୍ତେଜନା ଅନୁଭବ କରୁ ନ ଥିଲା । ଶେଷରେ ବିରକ୍ତ ହୋଇ ସେ ଖବର କାଗଜକୁ ତଳେ ପକାଇ ଦେଲା ଓ ଘରର ଛାତ ଉପରକୁ ଯାଇ ଚାରି ଆଡ଼କୁ ଅନାଇଲା ।

ତ୍ରିଭୁବନର ଛାତ ଉପରୁ ସେ ଗଳିର ଅନେକ ଅଞ୍ଚଳ ଦୃଶ୍ୟ ହେଉଥିଲା । ବର୍ତ୍ତମାନ ସନ୍ଧ୍ୟା ହୋଇ ନ ଥିବାରୁ ଅନ୍ୟ ଛାତମାନଙ୍କ ଉପରେ କେହି ଲୋକ ନ ଥିଲେ ଏବଂ ସ୍ୱଚ୍ଛନ୍ଦରେ ତ୍ରିଭୁବନ ଛାତ ଉପରେ ଘୂରିପାଖ ବୁଲି ବିଭିନ୍ନ ଦିଗକୁ ଦୃଷ୍ଟି ପକାଇଲା । ଚାରି ଆଡ଼ର ଘର ସବୁ ବି ତାକୁ ବୈଚିତ୍ର୍ୟହୀନ ମନେ ହେଲେ । ଘରର ଚେହେରା ଦେଖି ତା ଘର ସାମନାରେ ଚଲାପ୍ରଚଳ ହେଉଥିବା ଲୋକଙ୍କୁ ସେ ବିଭିନ୍ନ ଘରମାନଙ୍କ ସହିତ ମେଳ କରିବାକୁ ଚେଷ୍ଟା କଲା । ଯଥା, ଭାଙ୍ଗି ପଡ଼ୁଥିବା ଗ୍ରେଟ ଘରଟି ନିଶ୍ଚୟ ମିସ୍ତ୍ରୀ ଭଳି ଦେଖା ଯାଉଥିବା କାଶି କାଶି ଯାଉଥିବା ଚଷମା ଲଗା ବୁଢ଼ା ଲୋକଟିର ହୋଇଥିବ ବୋଲି ସେ ଅନ୍ଦାଜ ଲଗାଇଲା । ଜଣେ ଚନ୍ଦା ଦରବୁଢ଼ା ଭଦ୍ର ବ୍ୟକ୍ତିଙ୍କ ସହିତ ତାର ସାମାନ୍ୟ ପରିଚୟ ହୋଇଥିଲା, ଯେ କି ବ୍ୟାଙ୍କରେ କାମ କରୁଥିଲେ । ଭଦ୍ରବ୍ୟକ୍ତି ସବୁବେଳେ ସୁନ୍ଦର ଓ ସୌଖୀନ ପୋଷାକ ପିନ୍ଧୁଥିଲେ ଏବଂ ନିଜର ଚେହେରାର ତତ୍ତ୍ୱ ନେଉଥିଲେ । ତାଙ୍କ ପାଇଁ ତ୍ରିଭୁବନ ରାସ୍ତା ଆର ପାଖେ ଥିବା ଏକ ସୁଦୃଶ୍ୟ ଘର ଠିକ କଲା । ଭଦ୍ର ବ୍ୟକ୍ତିଙ୍କ ସହିତ ତାର ମଝିରେ ମଝିରେ ଗଳି ମୁଣ୍ଡ ପାନ ଦୋକାନରେ ଦେଖା ହେଉଥିଲା ଏବଂ ସେ ତାଙ୍କର ନାଁ ଜାଣିଥିଲା । ତାଙ୍କ ପାଇଁ ସେ ପସନ୍ଦ କରିଥିବା ଘର କବାଟରେ ନେମ ପ୍ଲେଟ ଲାଗିଥିଲା, କିନ୍ତୁ ଛାତ ଉପରୁ ତ୍ରିଭୁବନ ସେଇଟିକୁ ପଢ଼ି ପାରୁ ନ ଥିଲା । ସେ ଠିକ କଲା ତଳକୁ ଓହ୍ଲାଇ ସେ ପାଖକୁ ଯିବ ଏବଂ ଦେଖିବ ସେଇଟି ପ୍ରକୃତରେ ସୁବୋଧ ବାବୁଙ୍କର କି ନାଁ ।

ତ୍ରିଭୁବନ ଏ କଥା ଭାବୁଛି, ଏମିତି ଗୋଟାଏ ଘଟଣା ଘଟିଲା ଯାହା ତାକୁ ହତ ଚକିତ କରି ଦେଲା । ହଠାତ୍ ସେଇ ସୁନ୍ଦର ଘରଟିର କବାଟ ଖୋଲିଲା; ଅତି ସୁନ୍ଦରୀ ଝିଅଟିଏ ବାହାରକୁ ଆସିଲା ଓ ରାସ୍ତା ଉପରକୁ ଓହ୍ଲାଇଲା । ତ୍ରିଭୁବନ ତାକୁ ଦେଖୁଛି, ଝିଅଟି ଚଞ୍ଚଳ ଚଞ୍ଚଳ ପାଦ ପକାଇ ତାକୁ ଦେଖା ଯାଉଥିବା ରାସ୍ତା ତକ ଅତିକ୍ରମ କରି ଘରମାନଙ୍କ ପଛରେ ଅଦୃଶ୍ୟ ହୋଇଗଲା । ତ୍ରିଭୁବନ ତରତର ହୋଇ ଛାତ ଉପରୁ ଓହ୍ଲାଇଲା ଏବଂ ନିଜ ଘରର କବାଟ ବନ୍ଦ କରିବାକୁ ଅପେକ୍ଷା ନ କରି ଝିଅଟି ଯାଇଥିବା ରାସ୍ତାରେ ଚାଲିବାକୁ ଲାଗିଲା । କିନ୍ତୁ ରାସ୍ତାରେ ଆଉ ଝିଅଟି ଦେଖାଗଲା ନାହିଁ ଏବଂ ତ୍ରିଭୁବନ ଯାଇ ପାନ ଦୋକାନରୁ ସିଗାରେଟ ପ୍ୟାକେଟ

କରିଲା । ଏହି ଅବସରରେ ସେ ଚନ୍ଦାମୁଣ୍ଡ ଭଦ୍ରବ୍ୟକ୍ତିଙ୍କ ବିଷୟରେ କିଛି ଜ୍ଞାନ ଆହରଣ କରିବାକୁ ଚେଷ୍ଟା କଲା । "ସୁବୋଧବାବୁ କଣ ନାହାନ୍ତି କି ?" ସେ ପାନବାଲାକୁ ପଚାରିଲା, "ଆଜିକାଲି ଆଉ ଦେଖା ଯାଉ ନାହାନ୍ତି ।" ପାନବାଲା କହିଲା, "ଆଜି ସକାଳେ ତ ଆସିଥିଲେ ।" ତାଙ୍କ ବିଷୟରେ ଆଉ କିଛି ଜାଣିବା ଉଦ୍ଦେଶ୍ୟରେ ତ୍ରିଭୁବନ କହିଲା, "ମତେ କିଏ କହୁଥିଲା ତାଙ୍କ ପିଲାପିଲିଙ୍କୁ ଆଣିବାକୁ ଗାଁକୁ ଯାଇଛନ୍ତି ।" "ପିଲା ପିଲି ?" ପାନ ବାଲା ହସିଲା, "ସୁବୋଧ ବାବୁଙ୍କର ପୁଣି ପିଲାପିଲି କୋଉଠି ? ସେ ତ ଚିରକୁମାର !"

ଏହି ନୂଆ ତତ୍ତ୍ୱଟି ଧରି ତ୍ରିଭୁବନ ଏଥରକ ନିଜ ଘରକୁ ଫେରିବା ବଦଳରେ ସେହି ସୁନ୍ଦର ଘରଟି, ଯାହାକୁ ସେ ମନେ ମନେ ସୁବୋଧ ବାବୁଙ୍କ ମାଲିକାନାକୁ ସମର୍ପଣ କରିଥିଲା, ଆଡ଼କୁ ଗଲା । ରାସ୍ତାରେ ଛିଡ଼ା ହୋଇ ସେ ଏଥରକ କବାଟରେ ଲାଗିଥିବା ନେମ ପ୍ଲେଟକୁ ସ୍ପଷ୍ଟ ଭାବରେ ପଢ଼ି ପାରିଲା । ଘରଟି ପ୍ରକୃତରେ ସୁବୋଧ ବାବୁଙ୍କର ହିଁ ଥିଲା । ଘରର କବାଟ ବର୍ତ୍ତମାନ ଭିତରୁ ବନ୍ଦ ଥିଲା, ଯଦିଓ ଝିଅଟି ଘର ଭିତରୁ ବାହାରିବାବେଳେ କବାଟକୁ ଖୋଲି ରଖିଥିଲା । ତା ଅର୍ଥ, ଝିଅଟି ବ୍ୟତୀତ ସେତେବେଳେ ଘର ଭିତରେ ଅନ୍ୟ ଲୋକ ବି ଥିଲା । ସୁବୋଧବାବୁ ବ୍ୟାଙ୍କରୁ ଅନେକ ଡେରିରେ ଫେରୁଥିଲେ । ତା ମାନେ କଣ ସେ ଘରେ ସେତେବେଳେ ଆଉ କିଏ ଥିଲା ? ଏ କଥା ତ୍ରିଭୁବନକୁ ରହସ୍ୟମୟ ଲାଗିଲା । ନିଜ ଘରକୁ ଫେରି ସେ ପ୍ରଥମେ ଚାରିଆଡ଼କୁ ଆଖି ବୁଲାଇ ଦେଖିଲା ଯେ ଯଦିଓ ସେ କବାଟ ଖୋଲା ରଖି ଚାଲି ଯାଇଥିଲା, ତାର ଅନୁପସ୍ଥିତିରେ କୌଣସି ଚୋରି ହୋଇ ନ ଥିଲା; ସବୁ ଜିନିଷ ଯଥା ସ୍ଥାନରେ ଥିଲା । ସେ ଆଉ ଥରେ ଚା ବସାଇଲା ଓ ଚା ପିଉ ପିଉ ଝିଅଟି କଥା ଭାବିବାରେ ଲାଗିଲା ।

ଚା ପିଇ ସାରି ସେ ପୁଣି ଥରେ ଛାତ ଉପରକୁ ଗଲା, କିନ୍ତୁ ସୁବୋଧବାବୁଙ୍କ ଘରର କବାଟ ଏ ପର୍ଯ୍ୟନ୍ତ ବନ୍ଦ ଥିଲା । ଅନେକ ସମୟ ଛାତ ଉପରେ ବସି ସେ ବିରକ୍ତ ହୋଇ ତଳକୁ ଓହ୍ଲାଇଲା । ସେ ଦିନ ରାତିରେ ମେସରୁ ଖାଇ ସାରି ଘରକୁ ଫେରିଲାବେଳେ ତ୍ରିଭୁବନ ସୁବୋଧ ବାବୁଙ୍କ ଘର ଦେଇ ଆସିଲା । ଝରକା ବାଟେ ଯଦି ଓ ଭିତରୁ ଆଲୁଅ ଦେଖା ଯାଉଥିଲା, ବାହାର କବାଟ ଏବେ ବି ବନ୍ଦ ଥିଲା । ପାନ ଦୋକାନକୁ ଯାଇ ସେ ପୁଣି ସୁବୋଧ ବାବୁଙ୍କ ବିଷୟରେ ଆଉ କିଛି ସମ୍ବାଦ ସଂଗ୍ରହ କଲା, ଯଥା, ସେ ଏଠାରେ ଦୁଇ ବର୍ଷ ହେଲା ଅଛନ୍ତି; ସେ ବଡ଼ ବଜାର ବ୍ରାଞ୍ଚରେ କାମ କରନ୍ତି, ଇତ୍ୟାଦି ।

ପରଦିନ ସକାଳେ ସେ ତରତର କରି ଖବର କାଗଜ ପଢ଼ି ନେଲା ଓ ଗାଧୋଇ ସାରି ଛାତ ଉପରକୁ ଟାଉଏଲ ଶୁଖାଇବାକୁ ଗଲା । ଦିନସାରା ସେ ବାହାରେ

ରହୁଥିବାରୁ ଛାତ ଉପର ନଗ୍ରପଦ ନ ଥିଲା । ତେବେ ଆଜଠାରୁ ସେ ଛାତ ଉପରେ ହିଁ ଲୁଗାପଟା ଶୁଖାଇବାକୁ ନିଷ୍ପତ୍ତି କଲା । ଏ ପର୍ଯ୍ୟନ୍ତ ସୁବୋଧ ବାବୁଙ୍କ ବାହାର କବାଟ ଖୋଲି ନ ଥିଲା । ନିଜ କୋଠରୀକୁ ଫେରି ତ୍ରିଭୁବନ ଝରକା ଖୋଲି ବାହାରକୁ ଅନାଇଲା । ଯଦ୍ୟପି ସୁବୋଧ ବାବୁ ତାଙ୍କ ଘରୁ ବାହାରି ଏଇ ରାସ୍ତା ଦେଇ ଯାଉଥିଲେ, ତ୍ରିଭୁବନର ଝରକାରୁ ତାଙ୍କ ଘର ଦେଖାଯାଉ ନ ଥିଲା । କଲେଜ ସମୟ ପର୍ଯ୍ୟନ୍ତ ତ୍ରିଭୁବନ ଝରକା ଦେଇ ବାହାରକୁ ଜଗି ରହିଲା, କିନ୍ତୁ ସୁବୋଧ ବାବୁ ସେ ବାଟେ ଗଲେ ନାହିଁ । ତ୍ରିଭୁବନ ଦୁଃଖ କଲା ଯେ ବୋଧହୁଏ ସେ ଦ୍ୱିତୀୟ ଥର ଗୃହ ତଆରି କରିବା ବେଳେ ହିଁ ସୁବୋଧ ବାବୁ ସେ ବାଟେ ବାହାରି ଗଲେ ଏବଂ ସେ ତାଙ୍କୁ ଦେଖି ପାରିଲା ନାହିଁ ।

ସେ ଦିନ କଲେଜରୁ ଫେରି ସେ ବଡ଼ ବଜାରକୁ ଗଲା । ଆଜି ତାର କ୍ଲାସ ଶେଷ ପର୍ଯ୍ୟନ୍ତ ଥିଲା ଏବଂ ସେ ଯେତେବେଳେ ବ୍ୟାଙ୍କରେ ପହଞ୍ଚିଲା, ଅଫିସ ବନ୍ଦ ହେବା ବେଳ ହୋଇ ଆସିଥିଲା । ବ୍ୟାଙ୍କରେ ଆକାଉଣ୍ଟ ଖୋଲିବା ପାଇଁ ସେ ଫର୍ମ ଆଣିଲା, କିନ୍ତୁ କାଉଣ୍ଟରରେ ବସିଥିବା ଲୋକଟି ତାକୁ କହିଲା ଯେ ତାକୁ ଆଉ ଦିନେ ଆସିବାକୁ ପଡ଼ିବ, କାରଣ ସେ ଦିନ ପାଇଁ ବ୍ୟାଙ୍କ କାମ ବନ୍ଦ ହୋଇ ସାରିଥିଲା । ତଥାପି ବ୍ୟାଙ୍କରୁ ବାହାରୁଥିବା ଲୋକଙ୍କ ଉପରେ ଆଖି ରଖି ତ୍ରିଭୁବନ ସେଠାରେ ବସି ଫର୍ମକୁ ପୂରଣ କଲା । ସୁବୋଧ ବାବୁ ତଥାପି ବ୍ୟାଙ୍କରୁ ବାହାରିଲେ ନାହିଁ । କାଉଣ୍ଟରର ଲୋକଟିକୁ ସୁବୋଧ ବାବୁଙ୍କ ବିଷୟରେ ପଚାରିବ କି ନାହିଁ ଭାବି ଭାବି ସେ ସାହସ କରି ପାରିଲା ନାହିଁ; ତାକୁ ମନେ ହେଲା ଯେମିତି ତାର ପ୍ରଶ୍ନରୁ ସେଇ ଲୋକଟି ତାର ଅସଲ ଉଦ୍ଦେଶ୍ୟ ଜାଣି ପାରିବ । ରାସ୍ତାକୁ ଓହ୍ଲାଇ ପୁଣି କିଛି ସମୟ ସେ ବ୍ୟାଙ୍କ ସାମନାରେ ଛିଡ଼ା ହେଲା । କିନ୍ତୁ ସୁବୋଧ ବାବୁ ତଥାପି ଆସିଲେ ନାହିଁ । ସେ ଯେତେବେଳେ ସୁବୋଧ ବାବୁଙ୍କ ବାଟ ଦେଇ ନିଜ ଘରକୁ ଫେରିଲା, ଦେଖିଲା ଯେ ସୁବୋଧ ବାବୁଙ୍କ ଘର କବାଟ ଭିତରୁ ବନ୍ଦ ଥିଲା, ଯଦିଓ ପୂର୍ବ ଦିନ ପରି ତାଙ୍କ ଘରର ଝରକା ଦେଇ ଆଲୁଅ ଦେଖା ଯାଉଥିଲା ।

ସଞ୍ଜ ବେଳେ ଘରକୁ ଫେରି ସେ ଛାତ ଉପରୁ ଲୁଗାପଟା ଆଣିବାକୁ ଗଲା । ଗୃହ ପାଖର ଘର ସବୁ ବର୍ତ୍ତମାନ ଅନ୍ଧାରରେ ଆବୃତ ଥିଲେ ଏବଂ ସୁବୋଧ ବାବୁଙ୍କ ଘର ଝରକାରୁ କିଛି ଆଲୁଅ ଆସି ରାସ୍ତା ଉପରେ ପଡୁଥିଲା । ସେ ଛାତ ଉପରେ ଥିବାରୁ ଓ ସୁବୋଧ ବାବୁଙ୍କର ଘର ତଳ ମହଲାରେ ହୋଇଥିବାରୁ ସେ ତାଙ୍କ ଝରକା ଦେଇ ଭିତରକୁ ଦେଖି ପାରୁ ନ ଥିଲା । ତେବେ ଝରକା ବାଟେ ଆଲୁଅ ଆସି ରାସ୍ତା ଉପରେ ପଡୁଥିଲା ଯାହା ତାକୁ ସିଧା ସଳଖ ଦୃଶ୍ୟ ହେଉଥିଲା । ସେ ଆଶା କରୁଥିଲା ଯେ ସୁବୋଧ ବାବୁ, ଏବଂ ଭାଗ୍ୟରେ ଥିଲେ ସେଇ ସ୍ତ୍ରୀଅଟି, ଝରକା

ପାଖରେ ଆସି ଠିଆ ହେବେ ଏବଂ ତାଙ୍କର ଗ୍ରୀଭ ରାସ୍ତା ଉପରେ ଆସି ପଡ଼ିବ । କିନ୍ତୁ ଏ ତାର ଏକ ଦିବାସ୍ୱପ୍ନ ଥିଲା । ଏବଂ ଝରକାରୁ ଆସି ରାସ୍ତାରେ ପଡୁଥିବା ଆଲୁଅରେ କୌଣସି ପରିବର୍ତ୍ତନ ହେଲା ନାହିଁ ।

ଆରଦିନ ସକାଳୁ ତ୍ରିଭୁବନର ଖବରକାଗଜ ପଢ଼ିବାରେ ମନ ଲାଗିଲା ନାହିଁ । ସେ ଖବରକାଗଜକୁ ରଖି ଦେଇ ନିଷ୍ପତ୍ତି କଲା ଯେ ଭବିଷ୍ୟତରେ ସେ ଦୁଇଟି ବଦଳରେ ଗୋଟିଏ ଖବର କାଗଜ ରଖିବ । ଝରକା ଉପରେ ଅବିଚ୍ଛିନ୍ନ ଦୃଷ୍ଟି ରଖିବା ପାଇଁ ସେ ଶୀଘ୍ର ଶୀଘ୍ର ଚା ପିଇ ନେଇ ଆସି ଟେବୁଲ ପାଖରେ ବସି ରହିଲା । ଆଜି ତାର ଧୈର୍ଯ୍ୟ ଫଳବତୀ ହେଲା ଏବଂ ସେ ସୁବୋଧ ବାବୁଙ୍କୁ ରାସ୍ତାରେ ଆସୁଥିବାର ଦେଖିଲା । କାଳେ ସେ ତାକୁ ଦେଖି ପାରିବେ, ସେଥିପାଇଁ ସେ ତାର କୋଠରୀର ଏପରି ଏକ କୋଣରେ ଠିଆ ହେଲା, ଯେଉଁଠାରୁ ସେ ସୁବୋଧବାବୁଙ୍କୁ ସ୍ପଷ୍ଟ ଦେଖିପାରିବ, କିନ୍ତୁ ସୁବୋଧବାବୁ ତାକୁ ଦେଖି ପାରିବେ ନାହିଁ । ସୁବୋଧବାବୁ ଆଜି ସବୁଦିନ ଭଳି ସୌଖିନ ପୋଷାକ ପିନ୍ଧିଥିଲେ ଏବଂ ତାଙ୍କ ମୁହଁରେ ସନ୍ତୋଷ ଓ ପ୍ରସନ୍ନତାର ଏକ ଉଜ୍ଜ୍ୱଳତା ଥିଲା । ଏହା ଯେ ସେଇ ସୁନ୍ଦରୀ ଝିଅର ସଂସର୍ଗ ଜନିତ, ଏ ବିଷୟରେ ତ୍ରିଭୁବନର ଟିକେ ମାତ୍ର ସନ୍ଦେହ ନ ଥିଲା ।

ଏକ ଦୃଢ଼ ନିଷ୍ପତ୍ତି ନେଇ ତ୍ରିଭୁବନ ଘରୁ ବାହାରି ସୁବୋଧ ବାବୁଙ୍କ ଘର ପାଖକୁ ଗଲା ଏବଂ ଘରଟିକୁ ବାହାରୁ ଭଲ ଭାବରେ ନିରୀକ୍ଷଣ କଲା । ଘରର କବାଟ ଝରକା ସବୁ ବନ୍ଦ ଥିଲା ଏବଂ ସାହସ ସଂଚୟ କରି ତ୍ରିଭୁବନ ସାମନା କବାଟରେ କରାଘାତ କଲା । ସେ ମନେ ମନେ ସ୍ଥିର କରି ନେଇଥିଲା ଯେ କବାଟ ଖୋଲିଲେ କବାଟ ଖୋଲିଥିବା ଲୋକକୁ , ସେ ସେଇ ସୁନ୍ଦରୀ ଝିଅଟି ହୋଇ ଥାଉ ନା କାହିଁକି, ସେ ଦିନର ଖବର କାଗଜ ମାଗି ଏକ ଆଳାପର ସୂତ୍ରପାତ କରିବ । କିନ୍ତୁ ବାରମ୍ବାର କରାଘାତ କରିବା ପରେ କବାଟ ଖୋଲିଲା ନାହିଁ ଏବଂ ତଳକୁ ଅନାଇ ତ୍ରିଭୁବନ ଦେଖିଲା ଯେ କବାଟଟି ବାହାରୁ ତାଲା ବନ୍ଦ ଥିଲା ।

କଲେଜ ନ ଯାଇ ସେ ସିଧା ବଡ଼ ବଜାର ଗଲା ଓ ବ୍ୟାଙ୍କରେ ଆକାଉଣ୍ଟ ଖୋଲିଲା । ଆଜି ବି ସେ ବ୍ୟାଙ୍କରେ ସୁବୋଧ ବାବୁଙ୍କୁ ଦେଖିବାକୁ ପାଇଲା ନାହିଁ । କିନ୍ତୁ ଯୋଉ ଝିଅଟି ହାତରେ ଛତା ଓ ବ୍ୟାଗ ଧରି ଭିତରୁ ବାହାରି ରାସ୍ତା ଉପରକୁ ଓହ୍ଲାଇଲା, ସେ ତ୍ରିଭୁବନକୁ ସୁବୋଧବାବୁଙ୍କ ସୁନ୍ଦରୀ ଭଳି ମନେ ହେଲା । ତା ପଛେ ପଛେ ଆସି ତ୍ରିଭୁବନ ବ୍ୟାଙ୍କ ବାହାରେ ଛିଡ଼ା ହେଲା, କିନ୍ତୁ ଝିଅଟିକୁ ପୁଣି ଥରେ ଦେଖିବା ପରେ ତା ମନରେ ସାମାନ୍ୟ ସନ୍ଦେହ ଉପୁଜିଲା । ସେ ଆଉ ଝିଅଟି ପଛରେ ଗଲା ନାହିଁ ଏବଂ ସୁବୋଧ ବାବୁଙ୍କ ଦ୍ୱାରା ହିଁ ଏହି ରହସ୍ୟକୁ ଉଦ୍‌ଘାଟନ କରିବାର ନିଷ୍ପତ୍ତି କଲା ।

ତ୍ରିଭୁବନ ବର୍ତ୍ତମାନ ସୁବୋଧବାବୁ ଓ ତାଙ୍କ ଘର ଉପରେ ନଜର ରଖିବାର ବିଭିନ୍ନ ଉପାୟମାନ ସ୍ଥିର କରି ନେଲା । ଏହି ଯୋଜନାମାନଙ୍କରେ ତାର ଛାତ ଓ ଝରକା, ସୁବୋଧ ବାବୁଙ୍କ ଘରୁ ବାହାରେ ପଡ଼ୁଥିବା ଆଲୁଅ, ଗୋଟିଏ ବାଇନୋକୁଲାର କିଣିବା, ପାନ ଦୋକାନୀ, ତା ଘରେ ଖବର କାଗଜ ଦେଉଥିବା ପିଲା, ବଡ଼ ବଜାର ବ୍ୟାଙ୍କର କର୍ମଚାରୀ ସମସ୍ତେ ଅନ୍ତର୍ଭୁକ୍ତ ଥିଲେ । ଏଥି ସହିତ ସେ ନିଜର ଦିନଚର୍ଯ୍ୟା ମଧ୍ୟ ବଦଳାଇବାକୁ ଠିକ କଲା । ଏଥରକ ଦିଓଟି କାହିଁକି ସକାଳେ ଗୋଟିଏ ଖବର କାଗଜ ପଢ଼ିବା ମଧ୍ୟ ତାକୁ ସମୟର ଅପବ୍ୟବହାର ମନେ ହେଲା । ଘରେ ରହୁଥିବା ସମୟ ସବୁ ଯଦିଓ ଆଗରୁ ତା ମୁଣ୍ଡରେ ମାଡ଼ି ପଡ଼ିବା ଭଳି ମନେ ହେଉଥିଲା, ବର୍ତ୍ତମାନ ତ୍ରିଭୁବନ ସମୟର ମୂଲ୍ୟତା ବିଷୟରେ ସଚେତନ ହେଲା ।

ଶନିବାର ଦିନ କଲେଜର କିରାଣୀ ତାକୁ ଗୋଟାଏ ଚାବି ଦେଖାଇ କହିଲା, "କାଲି ସକାଳୁ ଯାଇ ଘର ଦେଖିବା । ଯଦି ପସନ୍ଦ ହବ, ଆପଣଙ୍କୁ ଚାବି ଦେଇ ଦେବି । ଯୋଉ ଦିନ ଇଚ୍ଛିବେ ଯାଇ ରହିବେ ।" ତ୍ରିଭୁବନ ଟିକିଏ ଇତସ୍ତତଃ ହୋଇ କହିଲା, "ମୁଁ ଭାବୁଚି ଆଉ ଏପଟ ସେପଟ ହୋଇ କଣ ଲାଭ ? ଏଠାରୁ ତ ବଦଳି ପାଇଁ ଦରଖାସ୍ତ ଦେଇଛି । ଆଉ ଅଳ୍ପ କେତେ ଦିନ ପାଇଁ କାହିଁକି ଘର ବଦଳାଇବି ?" କିରାଣୀ ପକେଟରେ ଚାବି ରଖୁ ରଖୁ ସହାନୁଭୂତିସୂଚକ ଭଙ୍ଗୀରେ କହିଲା, "ହଁ, ସେ କଥା ବି ଠିକ । ତେବେ ଭଲ ଘରଟା ହାତରୁ ଚାଲିଯିବ ।" କିରାଣୀ ପାଖରୁ ତ୍ରିଭୁବନ ସିଧା ପ୍ରିନ୍ସିପାଲଙ୍କ ପାଖକୁ ଗଲା; କହିଲା, "ଘରୁ ଚିଠି ଆସିଛି ବାପାଙ୍କ ଦେହ ଭଲ ହୋଇଗଲାଣି । ମୁଁ ମୋର ବଦଳି ଦରଖାସ୍ତଟା ଫେରାଇ ନଉଛି ।"

# ଅମରତ୍ୱ

ପାଠ ପଢ଼ିବା ବେଳେ ଅନିରୁଦ୍ଧ କବି ହେବାର ଦୁରାକାଂକ୍ଷା ରଖିଥିଲା ଏବଂ ଭାବିଥିଲା ଯେ କବିତା ଲେଖିବାର ମାଧ୍ୟମ ଦେଇ ସେ ବିଖ୍ୟାତ ହୋଇ ଯିବ । ସାହିତ୍ୟର ଛାତ୍ର ହିସାବରେ ସେ ଏହାକୁ ଏକ ସମ୍ଭବ ଇଚ୍ଛା ବୋଲି ଭାବୁଥିଲା, ଯଦିଓ କବିତା ଲେଖିବାକୁ ବସିବା ବେଳେ ସେ ଦୁଇ ଚାରି ଧାଡ଼ିରୁ ଆଗକୁ ଯିବାକୁ ସମର୍ଥ ହେଉ ନ ଥିଲା । କଲେଜ ଛାଡ଼ିବା ବେଳକୁ ତାର ସମୁଦାୟ ସାହିତ୍ୟିକ କୃତି ଥିଲା କଲେଜ ପତ୍ରିକାରେ ପ୍ରକାଶିତ ଗୋଟିଏ ମାତ୍ର କବିତା । ତଥାପି ଅନିରୁଦ୍ଧ କବି ହେବାର ଇଚ୍ଛା ଛାଡ଼ି ନ ଥିଲା । ସେ ଠିକ୍ କରିଥିଲା ଯେ ଚାକିରି ନେଇ ବସବାସ କରି ସାରିଲେ ସେ ଆରାମରେ ବସି କେବଳ କବିତା ହିଁ ଲେଖିବ ।

ଅନିରୁଦ୍ଧ ଶେଷରେ ପ୍ରଶାସନ ସେବାରେ ଯୋଗ ଦେଲା ଏବଂ ଚାକିରି କରିବା ସହିତ କିପରି ପିଲା ଦିନର ଇଚ୍ଛାକୁ ଫଳବତୀ କରିବ ସେ କଥା ଭାବିଲା । ଚାକିରିରେ ବହୁତ ପ୍ରକାରର ସମସ୍ୟା ଥିଲା ଏବଂ ଦିନ ସାରା କାମ କରି ସାରିବା ପରେ ସେ ତାର ମନକୁ କବିତା ଲେଖିବା ପାଇଁ ନିୟୋଜିତ କରି ପାରୁ ନ ଥିଲା । ତଥାପି ଏକାକୀ ବସିଥିବା ବେଳେ କବିତା ଲେଖି ପ୍ରସିଦ୍ଧ ହେବାର ଇଚ୍ଛା ତାକୁ ମଝିରେ ମଝିରେ ବ୍ୟସ୍ତ କରୁଥିଲା । ସେ ମନ ଭିତରେ ନିଜେ ଏକ ଖ୍ୟାତନାମା କବି ହୋଇଥିବାର ସ୍ୱପ୍ନ ଦେଖୁଥିଲା ଏବଂ ତାର କବିତାକୁ ଶହେବର୍ଷ ପରେ ଅନେକ ପାଠକ କୌତୁହଳତାର ସହିତ ପାଠ କରୁ ଥିବାର କଳ୍ପନା କରୁଥିଲା । ଯଦିଓ ସେ ନିଜକୁ ନୋବେଲ ପ୍ରାଇଜ ଇତ୍ୟାଦି ପାଇବାର ଚିନ୍ତାରୁ ଦୂରରେ ରଖୁଥିଲା, ତାକୁ ଯେଉଁ ଇଚ୍ଛାଟି ସବୁବେଳେ ବ୍ୟାକୁଳ କରୁଥିଲା ସେଇଟି ଥିଲା କବି ହୋଇ ଅମରତ୍ୱ ଲାଭ କରିବାର ଇଚ୍ଛା ।

ଚାକିରି ଯଦି ଅନିରୁଦ୍ଧର କବି ହେବାର ପ୍ରଥମ ପ୍ରତିବନ୍ଧକ ଥିଲା, ତାର ଏଇ ଉଚ୍ଚାକାଂକ୍ଷାର ଦ୍ୱିତୀୟ ପ୍ରତିବନ୍ଧକ ହେଲା ତାର ବିବାହ । ତାର ସ୍ତ୍ରୀ ମଧ୍ୟ ସାହିତ୍ୟର ଛାତ୍ରୀ ଥିଲା, କିନ୍ତୁ ତାର କବିତାରେ କୌଣସି ଆଗ୍ରହ ନ ଥିଲା । ଖ୍ୟାତି ଲାଭ ପାଇଁ

ତାର ପରିକଳ୍ପନା ଥିଲା ଅନ୍ୟ ପ୍ରକାରର । ସେ ଚାହୁଁଥିଲା ସେମାନେ ବିଭିନ୍ନ ପ୍ରକାରର ସ୍ଥାବର ଅସ୍ଥାବର ସଂପତ୍ତି ଏକତ୍ରିତ କରି ଅନିରୁଦ୍ଧଙ୍କର ସହକର୍ମୀ ଓ ପ୍ରତି-ବେଶୀମାନଙ୍କର କେବଳ ସମକକ୍ଷ ନୁହେଁ, ସେମାନଙ୍କ ଊର୍ଦ୍ଧ୍ୱକୁ ଚାଲିଯିବେ । ପ୍ରଥମେ ପ୍ରଥମେ ଅନିରୁଦ୍ଧଙ୍କୁ ଏ ଯୋଜନା ବିଶେଷ ଆକର୍ଷିତ କରି ନ ଥିଲା, ତଥାପି ସ୍ତ୍ରୀର ଉତ୍ସାହରେ ସେ କ୍ରମେ କ୍ରମେ ତାର ବସିବା ଘରକୁ ସଜାଇବା, ନୂଆ ଡାଇନିଂ ସେଟ କିଣିବା, ସରକାରୀ ଜମି ପାଇଁ ଦରଖାସ୍ତ କରିବା ଇତ୍ୟାଦି କାମରେ ମନ ଦେଲା ।

ଏ ସବୁ କାମ ସହିତ ସେ ଯେ ସ୍ତ୍ରୀକୁ କବିତା ଆଡ଼କୁ ଆକର୍ଷିତ କରିବାକୁ ଚେଷ୍ଟା କରୁ ନ ଥିଲା ତା ନୁହେଁ । କିନ୍ତୁ ତାର ସ୍ତ୍ରୀ ଅଳ୍ପ ବୟସରୁ ହିଁ ବିଷୟ ବୁଦ୍ଧି ସମ୍ପନ୍ନା ଥିଲା ଏବଂ କବିତା ଭଳି ମୂଲ୍ୟହୀନ ଜିନିଷରେ ସମୟ ନଷ୍ଟ ନ କରି ପଡ଼ୋଶୀ-ମାନଙ୍କୁ ନିଜର ସମ୍ପନ୍ନ ଅବସ୍ଥା ସମ୍ପର୍କରେ ଅବଗତ କରାଇ ସମୟର ସଦୁପଯୋଗ କରୁଥିଲା । ଦିନେ ସାହସ ସଂଚୟ କରି ଅନିରୁଦ୍ଧ ତାର ସ୍ତ୍ରୀକୁ ଅନେକ ଦିନ ତଳେ କଲେଜ ପତ୍ରିକାରେ ପ୍ରକାଶ ପାଇଥିବା ତାର କବିତାଟି ଦେଖାଇଲା । ସ୍ତ୍ରୀ କୌଣସି ଆଗ୍ରହ ନ ଦେଖାଇ କହିଲା, "ମୋ ତକିଆ ତଳେ ରଖିଦିଅ; ମୁଁ ରାତିରେ ପଢ଼ିବ ।" ପତ୍ରିକାଟିକୁ ତତ୍‌କ୍ଷଣାତ ନେଇ ସ୍ତ୍ରୀର ମୁଣ୍ଡ ତଳେ ରଖି ଦେବା ଉଚିତ ହୋଇଥାନ୍ତା । କିନ୍ତୁ ଦୁର୍ଭାଗ୍ୟକୁ ଅନିରୁଦ୍ଧ ସ୍ତ୍ରୀ ଆଗରେ ବସି କବିତାଟିକୁ ପୁନର୍ବାର ପଢ଼ି ତାର ରସ ଆସ୍ୱାଦନ କରିବାର ଧୃଷ୍ଟତା କଲା । କବିତା ଏବେ ବି ତାକୁ ଭଲ ଲାଗିଲା ଏବଂ ପୁଣି କବିତା ଲେଖି ପ୍ରସିଦ୍ଧି ପାଇବାର ଇଚ୍ଛା ତା ମନରେ ଉଙ୍କି ମାରିଲା । ସ୍ତ୍ରୀ କିନ୍ତୁ ଅନି-ରୁଦ୍ଧର ମୁହଁକୁ ଦେଖି ତାର ମନ କଥାକୁ ମୋଟା ମୋଟି ବୁଝି ନେଲା ଏବଂ କହିଲା, "କଣ ପ୍ରେମ କବିତା ?" ସ୍ତ୍ରୀ ପାଇଁ କବିତା ସବୁ ଦୁଇଟି ଶ୍ରେଣୀରେ ବିଭକ୍ତ ଥିଲେ, ପ୍ରେମ କବିତା ଓ ଅନ୍ୟ କବିତା । କିନ୍ତୁ ଏ ପ୍ରଶ୍ନରେ ଅନିରୁଦ୍ଧ ହଠାତ ବିବ୍ରତ ହୋଇ-ଗଲା ଓ କହିଲା, "ନାଁ, ଠିକ ପ୍ରେମ କବିତା ନୁହେଁ; ତେବେ...।" ସ୍ତ୍ରୀ ଏଥରକ ଏକ ଅବାନ୍ତର ପ୍ରଶ୍ନ କଲା, "ତମେ କଲେଜରେ ପଢ଼ୁଥିଲା ବେଳେ ତମ ସାଙ୍ଗରେ ଲିତା ନାଁ ଟିତା ବୋଲି କିଏ ଝିଅ ପଢ଼ୁଥିଲା ବୋଲି କହୁଥିଲ, ସେ କୁଆଡ଼େ ଗଲା ?"

କବିତା ଲେଖି ଖ୍ୟାତି ଓ ଅମରତ୍ୱ ପାଇବାର ଇଚ୍ଛାକୁ ଅନିରୁଦ୍ଧ ସେଇ ମୁହୂର୍ତ୍ତରେ ଜଳାଂଜଳି ଦେଇଦେଲା ଓ ପତ୍ରିକାଟିକୁ ସ୍ତ୍ରୀର ତକିଆ ତଳେ ନୁହେଁ, ପୁରୁଣା ଖବରକାଗଜ ଗଦା ଭିତରେ ପକାଇ ଦେଲା । କବିତା ଲେଖିବା ଏକ ଦୁରୂହ ଜିନିଷ ଥିଲା ଏବଂ ଅନିରୁଦ୍ଧ ଖୁସି ହେଲା ଯେ ସେ ଏ ଦୁଃସାହସରୁ ମୁକ୍ତି ପାଇଲା । କିନ୍ତୁ ସେ ଦିନ ରାତିରେ ଶୋଇ ଶୋଇ ଅନିରୁଦ୍ଧ ଭାବିବାରେ ଲାଗିଲା ଆଉ କଣ କଣ ନାଁ କରାଯାଇପାରେ । ନିଜର ସାହିତ୍ୟିକ ଶିକ୍ଷା ଓ ପୃଷ୍ଠଭୂମିକୁ ଆଖି

ଆଗରେ ରଖି ଅନିରୁଦ୍ଧ ଯେଉଁ ନିଷ୍ପତ୍ତିରେ ପହଞ୍ଚିଲା ସେଇଟି ହେଲା ଯେ ସେ ଅଫିସ ଫାଇଲମାନଙ୍କରେ ସାହିତ୍ୟିକ ଭାଷା ବ୍ୟବହାର କରିବ ଏବଂ କେହି ଭବିଷ୍ୟତର ଗବେଷକ "ଅଫିସ ଫାଇଲରେ ସାହିତ୍ୟ" ଶୀର୍ଷକ ସନ୍ଦର୍ଭ ଲେଖିଲାବେଳେ ନିଶ୍ଚୟ ତାର ଉଲ୍ଲେଖ କରିବ । ସ୍ତ୍ରୀର ତକିଆ ଆଡ଼କୁ ସନ୍ତର୍ପଣରେ ଚାହିଁ ସେ ମନେ ମନେ ଅଫିସ ଫାଇଲରେ ଦିଆ ଯାଇଥିବା ଅନେକ ଆଦେଶର ସାହିତ୍ୟିକ ପରିଭାଷାମାନ ତିଆରି କରିବାରେ ଲାଗିଲା ।

ପରଦିନ ଅଫିସରେ ବସି ଅନିରୁଦ୍ଧ ଜାଣିଲା ଯେ କବିତା ଲେଖିବା ଭଳି ଏ ମଧ୍ୟ ଏକ ଦୁଃସାଧ୍ୟ ଜିନିଷ ଥିଲା । ଛୁଟି ଦରଖାସ୍ତର ମଂଜୁରି ଆଦେଶକୁ ସେ ଅନେକ ଚେଷ୍ଟା ସତ୍ତ୍ୱେ ବି ସାହିତ୍ୟିକ ରୂପ ଦେଇ ପାରିଲା ନାହିଁ । ଅନ୍ୟ ଗୋଟିଏ ଫାଇଲରେ ସେ ଗୋଟିଏ ଶ୍ଳୋକ ଦି ଧାଡ଼ିର କବିତାରେ ଆଦେଶ ଲେଖିବାର ସମ୍ଭାବନା ଦେଖିଲା । କିନ୍ତୁ ଏ କଥା ଭାବିଲା ବେଳେ ତାକୁ କେବଳ ତାର ସ୍ତ୍ରୀର ମୁହଁ ନୁହେଁ, ତାର ଉପରିସ୍ଥ କର୍ମଚାରୀଙ୍କର ରୁକ୍ଷ ମୁହଁ ମଧ୍ୟ ଦେଖାଗଲା ଏବଂ ଅନିରୁଦ୍ଧ ଫାଇଲରେ ମିନି କବିତା ଲେଖିବାର ଚିନ୍ତାରୁ ନିଜକୁ ନିବୃତ୍ତ କଲା । ତେବେ ସେଦିନ ଯେତେବେଳେ ତା ପାଖକୁ କେତେଜଣ ନିମ୍ନତମ କର୍ମଚାରୀଙ୍କର ପ୍ରମୋଶନ ଫାଇଲ ଆସିଲା, ସେକ୍ସପିଅରଙ୍କୁ ସ୍ମରଣ କରି ଅନିରୁଦ୍ଧ ସେଥିରେ ଆଦେଶ ଲେଖିଲା, "ପରୁ ଫଳ ଭିତରୁ କାହାକୁ ବାଛିବ ?" ଏହି ଆଦେଶ ତଳେ ସେ ଭବିଷ୍ୟତର ଗବେଷକ କଥା ଭାବି ନିଜର ଦସ୍ତଖତକୁ ଭଲ ଭାବରେ ଶାଣିତ ଓ ପରିମାର୍ଜିତ କରି ଲେଖିଲା । ବର୍ତ୍ତମାନ ଅନିରୁଦ୍ଧ ମନେ ମନେ ଖୁସି ହେଲା, କିନ୍ତୁ ଫାଇଲ ଯେତେବେଳେ ତଳକୁ ଗଲା, ତାର ଆଦେଶକୁ କାର୍ଯ୍ୟକାରୀ କରିବାରେ ସମସ୍ୟା ଉପୁଜିଲା । ଶେଷରେ ଫାଇଲ ଧରି ତା ପାଖକୁ ବଡ ବାବୁ ଆସିଲେ । କହିଲେ, "କୃଷି ବିଭାଗ ଫାଇଲର ଅର୍ଡ଼ରଟା ଆପଣ ଭୁଲରେ ଏ ଫାଇଲରେ ଲେଖି ଦେଇଛନ୍ତି ।" ଅନିରୁଦ୍ଧ ତଳିଆ କର୍ମଚାରୀଙ୍କର ନିର୍ବୋଧତାକୁ ମନେ ମନେ ଗାଳି ଦେଲା, କିନ୍ତୁ ଫାଇଲରୁ ପରୁ ଫଳ ବିଷୟଟି କାଟି ଦେଇ ଲେଖିଲା, ଯଥା ପ୍ରସ୍ତାବିତ ।

ଏ ଘଟଣାରୁ ତା ମନରେ ଏକ ନୂଆ ଚିନ୍ତାଧାରା ଆସିଲା । ଭବିଷ୍ୟତରେ ଗବେଷକ 'ଅଫିସ ଫାଇଲରେ ହାସ୍ୟରସ' ସଂପର୍କରେ ଗବେଷଣା କରିପାରେ, ଏ କଥା ମନରେ ରଖି ସେ ନୋଟ ଲେଖିବ । ସେ ପ୍ରତିଟି ଫାଇଲକୁ ବାରମ୍ବାର ପଢ଼ି ସେଥିରେ କି ପ୍ରକାରର ହାସ୍ୟରସାତ୍ମକ କଥା ଲେଖା ଯାଇପାରେ ସେ ବିଷୟରେ ବହୁତ ଚିନ୍ତା କଲା । କିନ୍ତୁ ଫାଇଲର ବିଷୟବସ୍ତୁ ସବୁ ଅତ୍ୟନ୍ତ ଶୁଷ୍କ, ସମ୍ବେଦନା ରହିତ ଓ ବସ୍ତୁବାଦୀ ଥିଲା; ସେଥିରେ ଅନିରୁଦ୍ଧ ବ୍ୟଙ୍ଗୋଦ୍ଦୀପକ ମନ୍ତବ୍ୟର କୌଣସି ସମ୍ଭାବନା ଦେଖି ପାରିଲା ନାହିଁ ।

ଏପରି ବିଭିନ୍ନ ଭାବରେ ପ୍ରତିହତ ହୋଇ ଅନିରୁଦ୍ଧ ସ୍ଥିର ଖ୍ୟାତିଲାଭ କରିବା ଯୋଜନାରେ ମନ ଦେଲା । ପଡ଼ୋଶୀମାନଙ୍କ ସହିତ ପ୍ରତିଯୋଗିତା କରି ସେ ନିଜର ଘର ଓ ଜିନିଷ ମାନଙ୍କର ଉନ୍ନତି ବିଧାନ କରିବାରେ ଲାଗିଲା । ଘରେ ରଙ୍ଗ ଲଗାଇବା ସହିତ ସେ ଗୋଟିଏ ବଗିଚା ମଧ୍ୟ ଆରମ୍ଭ କଲା, ଯାହା ତାର ଅନ୍ୟ ପଡ଼ୋଶୀମାନଙ୍କର ନ ଥିଲା । ବଗିଚାଟି ବର୍ଷା ଓ ଶୀତ ଦିନେ ସତେଜ ଓ ସୁନ୍ଦର ରହୁଥିଲା; କିନ୍ତୁ ଖରା ଦିନେ ମଉଳି ଯାଉଥିଲା । ତେଣୁ ଖରା ଦିନଟି ସାରା ଅନିରୁଦ୍ଧର ବଗିଚାଜନିତ ଖ୍ୟାତି ବ୍ୟାହତ ହେଉଥିଲା । ନିଜର ଖ୍ୟାତିକୁ ସ୍ଥାୟିତ୍ୱ ଦେବା ପାଇଁ ଅନିରୁଦ୍ଧ ତାଙ୍କ ଅଞ୍ଚଳରେ ଶ୍ରେଷ୍ଠ ବଗିଚା ପାଇଁ ଏକ ପୁରସ୍କାରର ବ୍ୟବସ୍ଥା କରାଇଲା ଏବଂ ପ୍ରଥମ ବର୍ଷ ନିଜେ ପୁରସ୍କାର ପାଇଲା । ଅନିରୁଦ୍ଧ ବର୍ତ୍ତମାନ ଖୁସି ଥିଲା ଯେ ତାର ପ୍ରଥମ ପୁରସ୍କାର ପାଇବା କଥା ଚିରକାଳ ପାଇଁ ସହରର ଇତିହାସରେ ଲିପିବଦ୍ଧ ହୋଇ ରହିବ ।

ଏ ଭିତରେ ଅନିରୁଦ୍ଧ ଚାକିରିରେ ପ୍ରମୋଶନ ପାଇଲା, ବଦଳିରେ ବିଭିନ୍ନ ଜାଗାକୁ ଗଲା, ତାର ପୁଅ ଝିଅ ବଡ଼ ହେଲେ ଏବଂ ତାର ସ୍ତ୍ରୀ ମୋଟା ହୋଇ ଧର୍ମ-ପରାୟଣା ହୋଇଗଲା । ଏତେ ପରିବର୍ତ୍ତନ ଭିତରେ ମଧ୍ୟ ଯେଉଁ କଥାଟି ଅନିରୁଦ୍ଧର ମନ ଭିତରୁ ଗଲା ନାହିଁ, ସେଇଟି ହେଲା ପ୍ରସିଦ୍ଧ ହୋଇ ଅମରତ୍ୱ ପାଇବାର ଇଚ୍ଛା । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଅନିରୁଦ୍ଧ ଦେଖିଲା ଯେ କବିତା ଲେଖିବା ତ ଦୂରର କଥା, ଫାଇଲରେ ସାହିତ୍ୟିକ ଅଥବା ବ୍ୟଙ୍ଗାତ୍ମକ କିଛି ଲେଖିବା ମଧ୍ୟ ବର୍ତ୍ତମାନ ତା ପାଇଁ ଦୁଷ୍କର ଥିଲା । ତେବେ ନାଁର ସ୍ଥାୟିତ୍ୱ ପାଇଁ ସେ ସହଜ ଉପାୟମାନ ଚିନ୍ତା କଲା । ଯଥା, ନିଆ ଘର ତିଆରି କରି ସାରିବା ପରେ ତାର ଫାଟକରେ ନିଜର ନାଁର ଏକ ଫଳକ ଲଗାଇବା । କିଏ ତାକୁ ମାର୍ବଲରେ ନାଁ ଖୋଲାଇବାକୁ କହିଲା, କିନ୍ତୁ ଅନିରୁଦ୍ଧ ମିସ୍ତ୍ରୀକୁ କହିଲା, "ନା, ମାର୍ବଲ ଶୀଘ୍ର ଭାଙ୍ଗିଯିବ । ପିତ୍ତଳର ଲଗାଇବା ।" ମିସ୍ତ୍ରୀ କହିଲା, "ସେ କଥା ଠିକ୍ । ପିତ୍ତଳ ତିନି ଚାରି ପୁରୁଷ ଯିବ ।" ଏ କଥା ଅନିରୁଦ୍ଧକୁ ଭଲ ଲାଗିଲା ନାହିଁ । ସେ କହିଲା, "ତିନି ଚାରି ପୁରୁଷ କାହିଁକି, ଶହ ଶହ ବର୍ଷ ରହିବ । ମୋଟା ପିତ୍ତଳରେ ତିଆରି କର ।"

ଅନିରୁଦ୍ଧ ଯେତେବେଳେ ଗୋଟିଏ ଜିଲ୍ଲାର ଦାୟିତ୍ୱ ନେଲା, ଫଳକରେ ନିଜର ନାଁ ଖୋଳାଇ ନିଜକୁ ଅମର କରିବାର ଅନେକ ସୁଯୋଗ ଆସିଲା । ପୋଖରୀ, ପଞ୍ଚାୟତ ଘର, ଖେଳ ପଡ଼ିଆ, କ୍ଲବ ଇତ୍ୟାଦିର ଶିଳାନ୍ୟାସ ଓ ଉଦ୍‌ଘାଟନ ଇତ୍ୟାଦି ଅବସରରେ ସେ ନିଜ ନାଁ ଲେଖା ଫଳକମାନ ବିଭିନ୍ନ ସ୍ଥାନରେ ଲଗାଇଲା ଏବଂ ନିଶ୍ଚିନ୍ତ ହେଲା ଯେ ଅନ୍ତତଃ ଏଇ ଜିଲ୍ଲାର ଲୋକମାନେ କାଳ କାଳ ପାଇଁ ଅନିରୁଦ୍ଧକୁ ମନେ ରଖିବେ । ଜିଲ୍ଲାରୁ ସଚିବାଳୟକୁ ଆସିବା ପରେ ସେ ଆଉ ନିଜର ନାଁ ଫଳକ

ଉପରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିବାର ସୁଯୋଗ ପାଇଲା ନାହିଁ । ତେବେ ନିଜର ନାଁକୁ ପ୍ରଚାରିତ ଓ ପ୍ରସିଦ୍ଧ କରିବା ପାଇଁ ସେ ବିଭିନ୍ନ ପ୍ରକାରର ଆଦେଶନାମା ଉପରେ ଦସ୍ତଖତ କରିବାରେ ଲଗିଲା । କହିବା ବାହୁଲ୍ୟ, ତାର କାମର ଗୁଣରେ ଉନ୍ନତି ହୋଇ ଥାଉ ନ ଥାଉ, ସେ ନିଜର ନାଁକୁ ଅଦ୍ଭୁତ ଶାଣିତ ଓ ପରିମାର୍ଜିତ କରି ଲେଖିଥିଲା । ତାର ଦସ୍ତଖତ ବର୍ତ୍ତମାନ ସ୍ପଷ୍ଟ ଓ ସ୍ୱାଭିମାନପୂର୍ଣ୍ଣ ଥିଲା ଏବଂ ସେଥିରୁ ଜାଣି ହେଉଥିଲା ଯେ ଅନିରୁଦ୍ଧ ଜଣେ ଦକ୍ଷ ଅଫିସର ।

ଅନିରୁଦ୍ଧଙ୍କର ଅବସର ଗ୍ରହଣ ସମୟ ଯେତେ ନିକଟ ହୋଇ ଆସିଲା, ତାର ସେତିକି ସନ୍ଦେହ ଜନ୍ମିଲା ସେ ତାର ଅଫିସ କାମରେ ଗୁଡ଼ି ଯାଉଥିବା ନିଜର ନାଁ ବିଷୟରେ । ଏ କଥା ପରଖ କରିବା ପାଇଁ ସେ ପୂର୍ବରୁ କାମ କରିଥିବା ବିଭିନ୍ନ ଅଫିସକୁ ଗଲା । ପରିଦର୍ଶନ ଆଳରେ ସେଠାରେ ଗୋଟାଏ ଫାଇଲ ଓଲଟାଇ ଓଲଟାଇ ସେ କହିଲା, "କୋଡ଼ିଏ ବର୍ଷ ତଳେ ମୁଁ ଏଇ ଅଫିସରେ ଥିଲି । ସେତେବେଳେ ମଧ୍ୟ ଏଇ ବିଷୟ ଉପରେ ଗୋଟିଏ ଫାଇଲ ଥିଲା, ଯୋଉଥିରେ ମୁଁ ଅନେକ ପ୍ରସ୍ତାବ ଦେଇଥିଲି । ସେ ଫାଇଲ ମିଳିବ କି ?" ତାର ପୁଚ୍ଛାର ଜାଗାରେ ବର୍ତ୍ତମାନ କାମ କରୁଥିବା ଅଫିସର କହିଲା, "ରେକର୍ଡ ମାନୁଆଲ ଅନୁସାରେ ସେ ଅସ୍ଥାୟୀ ଫାଇଲ ସବୁ ଦଶ ବର୍ଷ ପରେ ନଷ୍ଟ କରି ଦିଆଯାଇଛି ।" ସରକାରଙ୍କ ପାଇଁ ତାର ମୂଲ୍ୟବାନ କାମ ସବୁକୁ ଏମିତି ନଷ୍ଟ ଭ୍ରଷ୍ଟ କରି ଦେଇଥିବା କଥା ଶୁଣି ଅନିରୁଦ୍ଧର ଦୁଃଖ ହେଲା ଏବଂ ସେ ବିରକ୍ତ ହୋଇ ସେଇ ଅଫିସର କାମ ବିଷୟରେ ନିଜର ପରିଦର୍ଶନ ରିପୋର୍ଟରେ ପ୍ରତିକୂଳ ମନ୍ତବ୍ୟମାନ ଦେଲା ।

ସେତେବେଳକୁ ତାର ଦୁଇ ପୁଅ ବଡ଼ ହୋଇ ଯାଇଥିଲେ ଓ ଝିଅ ବାହା ହୋଇ ସାରିଥିଲା । ପୁଅମାନେ ଅନିରୁଦ୍ଧର ଶତ ପ୍ରରୋଚନା ସତ୍ତ୍ୱେ ସରକାରୀ ଚାକିରିରେ ପଶିବାକୁ ଚାହୁଁ ନଥିଲେ ଏବଂ ବ୍ୟବସାୟ କରିବାକୁ ଚାହୁଁଥିଲେ । ଅନିରୁଦ୍ଧ ସେମାନଙ୍କୁ ବୁଝାଇଥିଲା, "ସରକାରୀ ଚାକିରିରେ ଟଙ୍କା ସିନା ନାହିଁ, ଅନେକ ନାଁ ଅଛି ।" ବଡ଼ ପୁଅ କହିଲା, "କି ନାଁ ଅଛି ? ତମର ସେଇ ସାଙ୍ଗ ସିନା ଭିଜିଲାନ୍ସ କେସ୍‌ରେ ପଡ଼ି ଜେଲ ଗଲାରୁ ଲୋକେ ତା ନାଁ ଜାଣିଲେ, ନ ହେଲେ କିଏ ଜାଣୁଚି ତମର ଅଫିସରଙ୍କୁ ?" ଅନିରୁଦ୍ଧ ଚୁପ୍ ରହିଲା, କିନ୍ତୁ ମାସେ ପରେ ଯେତେବେଳେ ତାର ପୁରୁଣା ଜିଲ୍ଲାକୁ ଗସ୍ତରେ ଗଲା, ପୁଅଙ୍କୁ ସାଙ୍ଗରେ ନେଇଗଲା । ଜିଲ୍ଲା ହେଡ଼-କ୍ୱାର୍ଟର ଭିତରକୁ ପଶିବା ବେଳକୁ ଯୋଉ ସ୍କୁଲ ପଡୁଥିଲା, ଅନିରୁଦ୍ଧ ସେଠାରେ ଗାଡ଼ି ଅଟକାଇଲା ଓ ପୁଅଙ୍କୁ କହିଲା, "ଆସ, ଦେଖ, ସରକାରୀ ଚାକିରିରେ ନାଁ ଅଛି କି ନାହିଁ ।" ରବିବାର ବୋଲି ସ୍କୁଲ ଛୁଟି ଥିଲା ଏବଂ କେହି କୁଆଡ଼େ ନ ଥିଲେ ।

ଅନିରୁଦ୍ଧ ସିଧା ସ୍କୁଲର ସାମନା କାନ୍ଥକୁ ଯାଇ ସେ ଲଗାଇଥିବା ଫଳକକୁ ଖୋଜିଲା । ସେଠାରେ କେବଳ ଧଉଳା ହୋଇଥିବା କାନ୍ଥ ଥିଲା, ଫଳକର କୌଣସି ଚିହ୍ନ ବର୍ତ୍ତି ନ ଥିଲା । ତାର ସ୍ମରଣରେ ଭୁଲ ହୋଇ ଥାଇପାରେ ବୋଲି ଅନିରୁଦ୍ଧ ସ୍କୁଲ ଘରର ଚାରିଆଡ଼େ ବୁଲି ସବୁ କାନ୍ଥକୁ ତନ୍ନ ତନ୍ନ କରି ନିରୀକ୍ଷଣ କଲା, କିନ୍ତୁ କୌଣସିଠାରେ ତାର ନାଁ ଲେଖା ଶିଳାଲିପିର ନାମ ଗନ୍ଧ ନ ଥିଲା ।

ଗସ୍ତରୁ ଫେରି ଅନେକ ଚିନ୍ତା ପରେ ସେ ଶେଷରେ ଏକ ସୁନ୍ଦର ମୀମାଂସାରେ ପହଞ୍ଚିଲା । ତାଙ୍କ ବିଭାଗର ବିଭିନ୍ନ ନିୟମାବଳୀକୁ ଏକତ୍ରିତ କରି ସେ ଗୋଟିଏ ସଂକଳନ ବାହାର କରିବ ଏବଂ ସେଥିରେ ତାର ଭାବୋଦ୍ଦୀପକ ମୁଖବନ୍ଧ ଲେଖିବ । ଅବସର ଗ୍ରହଣ ପୂର୍ବରୁ ଏହି କାମରେ ସେ ମନପ୍ରାଣ ଲଗାଇଲା ଏବଂ ଶେଷରେ ନିୟମାବଳୀର ଏକ ସୁଦୃଶ୍ୟ ସଂସ୍କରଣ ପ୍ରକାଶ ପାଇଲା, ଯେଉଁଥିର ଆରମ୍ଭରେ ଥିଲା ତାର ସୁଦୀର୍ଘ ଓ ସୁଚିନ୍ତିତ ମୁଖବନ୍ଧ । ଅନିରୁଦ୍ଧ ବର୍ତ୍ତମାନ ନିଶ୍ଚିନ୍ତ ଥିଲା ଯେ ତାର ନାଁ ଏଥରକ ଏହି ଛପା ବହିଟିର ମାଧ୍ୟମରେ ଇତିହାସ ପୃଷ୍ଠା ଭିତରକୁ ଚାଲିଯାଇଛି ଏବଂ ନିୟମାବଳୀ ପ୍ରଚଳିତ ଥିବା ପର୍ଯ୍ୟନ୍ତ ତାର ନାଁ ଅମର ହୋଇ ରହିବ । ଏହି ଭଳି ଆଶ୍ୱାସନାର ସହିତ ଅନିରୁଦ୍ଧ ଅବସର ଗ୍ରହଣ କଲା ।

ଅନିରୁଦ୍ଧ ପରେ ସେଇ ଚୌକିକୁ ଆସିଲା ଚନ୍ଦ୍ରମୌଳି । ତାର ମଧ୍ୟ ଅବସର ଗ୍ରହଣ ସମୟ ବେଶି ଦିନ ନ ଥିଲା । ପିଲାଦିନେ ସେ କ୍ରିକେଟ ଖେଳୁଥିଲା ଏବଂ ଭାବୁଥିଲା ଯେ ଏକ ମହାନ ସ୍କୋର କରି ଗିନିଜ ବୁକ୍‌ରେ ନ ହେଲେ ବି ଭାରତୀୟ କ୍ରିକେଟ ଇତିହାସରେ ଅମରତ୍ୱ ପାଇବ । କିନ୍ତୁ ଶେଷକୁ ସେ ପ୍ରଶାସନ ସେବାରେ ଯୋଗ ଦେଲା ଏବଂ ଆଉ କ୍ରିକେଟ ଖେଳିବାର ସୁଯୋଗ ପାଇଲା ନାହିଁ । ଚାକିରି ଶେଷ ବେଳକୁ ସେ ଫାଇଲରେ ସାହିତ୍ୟିକ ନୋଟ ଓ ଶିଳାଲିପି ଇତ୍ୟାଦି ମାଧ୍ୟମରେ ପ୍ରସିଦ୍ଧି ପାଇବାର ଅସାରତା ବିଷୟରେ ପୂର୍ଣ୍ଣ ମାତ୍ରାରେ ସଚେତନ ଥିଲା । ତେଣୁ ସେ ନିୟମାବଳୀ ସଂକଳନକୁ ପୁନର୍ମୁଦ୍ରଣ କରାଇବାରେ ମନ ଦେଲା । ଏହି ସଂକଳନର ଦ୍ୱିତୀୟ ସଂସ୍କରଣ ପାଇଁ ସେ ଅନିରୁଦ୍ଧଙ୍କର ପୂର୍ବ ମୁଖବନ୍ଧଟି ବାହାର କରି ଦେଇ ନିଜର ଏକ ସୁଚିନ୍ତିତ ମୁଖବନ୍ଧ ଲେଖିଲା ଓ ତା ତଳେ ସ୍ପଷ୍ଟ ଭାବରେ ନିଜର ନାଁ ଦସ୍ତଖତ କଲା । ଯେତେବେଳେ ପ୍ରେସରୁ ଛପା ହୋଇ ବହିର ପ୍ରଥମ କପିଟି ତା ପାଖକୁ ଆସିଲା, ସେ ପୃଷ୍ଠା ଓଲଟାଇ ଶାନ୍ତି ଓ ତୃପ୍ତିର ନିଃଶ୍ୱାସ ନେଲା ଯେ ତାର ନାଁ ଏଥରକ ଅମର ହୋଇ ରହିବ ।

●